ବିଶ୍ୱଇତିହାସ ପ୍ରତି ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଏ ପୁସ୍ତକ ରଚିତ । ସ୍ମରଣୀୟ ନୌଜୀବନର ମଧ୍ୟ ଦେଇ ପୃଥିବୀର ବିଭିନ୍ନ ଦେଶର ଇତିହାସ ଓ ସଂସ୍କୃତିର ସଂକ୍ଷିପ୍ତ ଏଥିରେ ଦିଆଯାଇଛି । ବିଶ୍ୱଇତିହାସ ସମ୍ବନ୍ଧରେ ସାଧାରଣଜ୍ଞାନ ନ ଥିଲେ ଏ ପୁସ୍ତକର ବିଷୟବସ୍ତୁ ଗ୍ରହଣ କରିବା କଠିନ ହେବ, କିନ୍ତୁ ଏହା ଇତିହାସ ପଠନ ପ୍ରତି ଆଗ୍ରହ ଓ କୌତୂହଳ ବଢ଼ାଇବ ବୋଲି ଆଶା କରାଯାଏ । କେତେକ ଅଳ୍ପଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରେ ଏହାର ପ୍ରଚ୍ଚର କରାଇବାର ପରୀକ୍ଷା କରି ଦେଖାଯାଇଛି ଓ ତହିଁରେ ଆଶାନୁରୂପ ଫଳ ମିଳିଛି ।

—ଲେଖକ

ଏକଟଙ୍କା

ଅଧ୍ୟାପକ ଶ୍ରୀ ନବୀନ କୁମାର ସାହୁ

ଯୁଗେ ଯୁଗେ

# ଭାରତୀୟ ନୌଜୀବନ

ଭାରତ ସରକାରଙ୍କଠାରୁ ପୁରସ୍କାର ପ୍ରାପ୍ତ ପୁସ୍ତକ

ପ୍ରକାଶିକା—ଶ୍ରୀମତୀ ସରସ୍ୱତୀ ସାହୁ,
ବରପାଲି
ଜିଲା—ସମ୍ବଲପୁର

ପ୍ରଥମ ମୁଦ୍ରଣ—୧୯୫୫
ଏକ ହଜାର

ମୁଦ୍ରାକର—ପଦ୍ମନାଭ ମିଶ୍ର
ନବଭାରତ ପ୍ରେସ,
କଟକ—୨



କଳିଙ୍ଗ ଉପକୂଳର 'ପଢଉ' ।

ଯୁଗେ ଯୁଗେ

# ଭାରତୀୟ ନୌଜୀବନ

ଭାରତର ତିନି ଦିଗରେ ସାଢ଼େ ତିନିହଜାର ମାଇଲ ସମୁଦ୍ର ଘେରି ରହି ଏ ଦେଶର ସାମାଜିକ ଓ ସାଂସ୍କୃତିକ ଜୀବନକୁ ନାନାଭାବରେ ପ୍ରଭାବିତ କରିଛି । ହିମାଳୟ ଉଚ୍ଚ ଢାଲୁରୂପେ ଏସିଆ ଓ ଭାରତ ମଧ୍ୟରେ ଯେଉଁ ବ୍ୟବଧାନ ଗଢ଼ିଛି ତାହା ସତେ ଯେପରି ମିଳାଇ ଯାଇଛି ଭାରତ ମହାସାଗରର ଜଳରାଶିରେ । ସଭ୍ୟତାର ପହିଲାଠୁ ଆଜଯାଏ ଏହି ମହାସାଗରରେ କେତେ ଭାରତୀୟ ବୋଇତ ଭାସିଯାଇଛି ବାହାର ଜଗତ ସହିତ ସମ୍ମିଳନ ଲଭିବା ଆଶାରେ । ଏକ ଦିଗରେ ବ୍ରହ୍ମଦେଶ, ଚମ୍ପା, କମ୍ବୋଜ, ଯବ, ଚୀନ ଓ ଜାପାନ ଏବଂ ଅନ୍ୟଦିଗରେ ଆରବ, ମିଶର, ଗ୍ରୀସ୍ ଓ ରୋମ ଆଦି ଦେଶ ସହିତ ଭାରତର ଆନ୍ତରିକ ବନ୍ଧନ ରହିଛି ଏହି ସାଗରପାଣି ଯୋଗୁଁ । ସମୁଦ୍ରର ଆହ୍ୱାନ ଭାରତୀୟଙ୍କ ପ୍ରାଣରେ ବହୁଦିନରୁ ଉଚ୍ଛ୍ୱାସ ଜନ୍ମାଇଛି ଓ ଏଇଥିପାଇଁ ଭାରତର ଭାବଧାରା ଏସିଆଖଣ୍ଡକୁ ଯୁଗେ ଯୁଗେ ଭସାଇ ପାରିଛି ।

## ଆଦିମ ନାବିକର ପରିଚୟ

ସାଗରର ମତାଣିଆ ଡାକ ଯେଉଁ ଆଦିମାନବକୁ ଅସ୍ଥିର କରିଥିଲା ଇତିହାସ ତାହାର ପରିଚୟ ରଖି ପାରିନାହିଁ । ଆଜି ଭାରତୀୟ ଉପକୂଳର ଦରିଦ୍ର ଧୀବର ଯେଉଁ ଦୁଇଖଣ୍ଡି କାଠ ଯୋଡ଼ି ଫେଣିଲ ଢେଉ ସଂଗେ ନିର୍ଭୟରେ ଲେଉଟିପଡ଼େ ତାହାର ଗଠନରେ

ସମ୍ଭବତଃ ଆଦିମ ନାବିକର ହାତ ରହିଛି । ଏବର ଓଡ଼ିଶା ଓ ଆନ୍ଧ୍ର ଉପକୂଳର ନୋଳିଆ, କୈବର୍ତ୍ତି, କଣ୍ଡ୍ରଆଦିଙ୍କ ଜାର୍ଣ୍ଣ 'ପଢ଼ଉ' ସହିତ ଇଣ୍ଡୋନେସିଆ ଓ ଚୀନା ମତ୍ସ୍ୟଜୀବୀଙ୍କ କ୍ଷୁଦ୍ର 'ସଂପାନ୍'-ଗୁଡ଼ିକର ବିଚିତ୍ର ମେଳ ଦେଖାଯାଏ । ଆଦିମନାବିକଙ୍କ ଭାବଧାରା ଓ ଅନୁଭୂତ ଏଗୁଡ଼ିକରେ ଅବିକୃତ ହୋଇ ରହିପାରିଛି ବୋଲି ମନେହୁଏ । ଦାକ୍ଷିଣାତ୍ୟରେ ତୁଙ୍ଗଭଦ୍ରା ଓ କାବେରୀ ନଦୀରେ ଯେଉଁ ଗୋଲକାର ନୌକାସବୁ ଭଉଁରୀ ଖେଳି ଏ କୂଳରୁ ସେ କୂଳକୁ ଯାଳକ ମାନେ ଭାସିଯାନ୍ତି ଠିକ୍ ସେହି ଧରଣର ବର୍ତ୍ତୁଳ 'ଗୁଫା'ମାନ ମେସୋପଟାମିଆର ଇଉଫ୍ରେଟିସ୍ ଓ ଟାଇଗ୍ରିସ୍ ନଦୀରେ ଦେଖାଯାନ୍ତି । ପ୍ରାଚୀନ ଏସିରିଆ ଓ ବେବିଲୋନ୍‌ରେ ଅବିକଳ ଏ ଧରଣର ନୌକା ବ୍ୟବହୃତ ହେଉଥିବା ଐତିହାସିକମାନେ କହନ୍ତି । ଭାରତୀୟ ନୌକାର ସବୁଠୁଁ ପ୍ରାଚୀନ ପ୍ରତିକୃତି ମହେଞ୍ଜୋ-ଦାରୋର ସିଲ୍‌ମୋହରରେ ଅଂକା ହୋଇଥିବା ଦେଖାଯାଏ । ସିନ୍ଧୁ ସଭ୍ୟତାର ଚତୁର କାରିଗର ବଣାଲଗଛର ଗଣ୍ଡି ଚିରି ସେ କାଳର ସମୁଦ୍ରଗାମୀ ନୌକା ମଜ୍‌ଭୁତକରି ଗଢ଼ିଥିଲେ । ସେ ଗୁଡ଼ିକର ମାଛ ଆକୃତି ଓ ଅଙ୍କାଲଯୁକ୍ତ ମାସ୍ତୁଲ ଦେଖି ମନେହୁଏ ଯେ ସେ ସବୁ ଅନେକ ଯୁଗର ଅଭିଜ୍ଞତା ନେଇ ଗଢ଼ାହୋଇଛି । ଏ ବୋଇତ ସାହାଯ୍ୟରେ ସେ କାଳର ସୁମେର ଓ ସେମିଟିକ୍ ଜାତିର ରାଜ୍ୟମାନଙ୍କରେ ଭାରତୀୟ ବଣିକ ବହୁକାଳଧରି ବାଣିଜ୍ୟ କରୁଥିଲେ । ଅଜକୁ ପାଞ୍ଚ ହଜାର ବର୍ଷତଳେ ଆକାଡ଼ର ରାଜା ସର୍ଗନଙ୍କ ଦରବାରରେ ଭାରତର ପଣ୍ୟ ବିଶେଷ ଆଦର ପାଉଥିବା ଜଣାପଡ଼େ । ସିନ୍ଧୁ ସଭ୍ୟତାର ସକଳ ଉନ୍ନତି ଓ ବିଭବ ମୂଳରେ ଭାରତର ନୌବାଣିଜ୍ୟ ଓ ନୌଚାଳନାର କୁଶଳତା କାର୍ଯ୍ୟ କରିଥିବାର ଲକ୍ଷ୍ୟ କରିଯାଏ ।



ଇଉଫ୍ରେଟିସ୍ ନଦୀର ଗୋଲକାର 'ଗୁଫା' ।

## ଇତିହାସର ପ୍ରଭାତ

ବୈଦିକ ଯୁଗରେ ନୌଚାଳନାର ପରଂପରା କି ଅବସ୍ଥାରେ ଥିଲା ତାହା ନିରୂପଣ କରିବାର ଉପାୟ ନାହିଁ । ଆର୍ଯ୍ୟ ଋଷିଙ୍କ ଶତ୍ରୁଙ୍କୁ ଆର୍ଯ୍ୟ କରିବା ଆହ୍ୱାନ ବୈଦିକ ସାହିତ୍ୟରେ ପ୍ରତିଧ୍ୱନିତ ହୁଏ ଏବଂ ତହିଁରେ ସ୍ଥାନେ ସ୍ଥାନେ ନୌଯାତ୍ରାର ଉଲ୍ଲେଖ ଦେଖାଯାଏ । କିନ୍ତୁ ଆର୍ଯ୍ୟଜାତି ବହୁକାଳ ଯାଏ ସାଗରଠାରୁ ଦୂରରେ ରହି ନୌଚାଳନା ନିମନ୍ତେ ଅବସର ପାଇ ପାରି ନଥିବା ମନେହୁଏ । ଆର୍ଯ୍ୟମାନେ ଭାରତର ଉତ୍ତରରେ ବସତି କଲାବେଳେ ସମୁଦ୍ର ଉପକୂଳର ଅଯୋଁତର ଜାତିମାନେ ଦେଶ ବିଦେଶରେ ନୌବାଣିଜ୍ୟ ଚଳାଉଥିବା ଜଣାପଡ଼େ । ଇହୁଦୀମାନଙ୍କ ପ୍ରାଚୀନ ଲେଖାଗୁଡ଼ିକରୁ ଭାରତୀୟଙ୍କ ନୌଚାଳନା ଓ ବାଣିଜ୍ୟ ପଟୁତାର ଯଥେଷ୍ଟ ସୂଚନା ମିଳେ । ରାଜା ସୋଲୋମନ୍‌ଙ୍କ ପ୍ରାସାଦରେ ଯେଉଁ ସବୁ ହାତୀଦାନ୍ତ ଓ ମୂଲ୍ୟବାନ ପଥରର କାରୁକାର୍ଯ୍ୟ ରହିଥିଲା ଏବଂ ଯେଉଁ ଶୁକ, ମୟୂର ଓ ମର୍କଟଦଳ ଜୁଡ଼ା ରାଜ୍ୟର ଉଦ୍ୟାନମାନଙ୍କର ଶୋଭା ବର୍ଦ୍ଧନ କରୁଥିଲେ, ସେ ସବୁ ସେକାଳର ଭାରତୀୟମାନଙ୍କ ସମୁଦ୍ରବାଣିଜ୍ୟର ନିଦର୍ଶନ । ବୁଦ୍ଧଦେବଙ୍କ ବହୁପୂର୍ବେ ଭାରତୀୟ ବଣିକମାନେ ବୋଇତ ବାହି ବେବିଲୋନ୍ ଓ ଲୋହିତସାଗର ଯାଏ ବାଣିଜ୍ୟ ପାଇଁ ଯାଉଥିବା କଥା ବୌଦ୍ଧଜାତକମାନଙ୍କରୁ ମିଳେ । ଖ୍ରୀଷ୍ଟଜନ୍ମର ଛ'ଶହ ବର୍ଷ ଆଗେ ପଶ୍ଚିମ ଉପକୂଳର ସୌବୀର ଏବଂ ପୂର୍ବଉପକୂଳର କଳିଙ୍ଗ ରାଜ୍ୟ ସମୁଦ୍ରବାଣିଜ୍ୟରେ ପ୍ରସିଦ୍ଧି ଲାଭ କରିଥିବା ଜଣାଯାଏ । ଫୋନିସିଆର ନାବିକଙ୍କ ଜାହାଜ ପ୍ରତିବର୍ଷ ସୌବୀର ପର୍ଯ୍ୟନ୍ତ ଆସୁଥିଲା ଏବଂ ଭାରତର ବଣିକ ମଧ୍ୟ ବହୁ ପ୍ରକାର ମୂଲ୍ୟବାନ ପଥର, ହାତୀଦାନ୍ତ, କାର୍ପାସବସ୍ତ୍ର ଓ ବିଚିତ୍ର ପଶୁପକ୍ଷୀ ଘେନି ସୌବୀର କୂଳରୁ ଲୋହିତସାଗର ଯାଏ

ବୋଇତରେ ଭ୍ରମିଯାଉଥିଲେ । କଳିଙ୍ଗର ନୌଚଳାଚଳ ଥିଲ ଦକ୍ଷିଣ-ପୂର୍ବ ଏସିଆର ବିଭିନ୍ନ ଦେଶ ଓ ଦ୍ୱୀପପୁଞ୍ଜ ସହିତ । ବ୍ରହ୍ମଦେଶ ସହିତ କଳିଙ୍ଗର ନାବିକ ବହୁକାଳରୁ ପରିଚିତ ଥିଲେ ଏବଂ ଯବ, ସୁମାତ୍ରା ପ୍ରଭୃତି ଦ୍ୱୀପବାସୀଙ୍କ ଆଦିପୁରୁଷ କଳିଙ୍ଗ ଦେଶରୁ ଯାଇଥିବା କଥା ସେଠାର ପରଂପରାରୁ ପ୍ରକାଶ ପାଏ । ଜୈନଙ୍କ ଉତ୍ତରାଧ୍ୟୟନ ସୂତ୍ରରୁ ଜଣାଯାଏ ଯେ ଶେଷ ତୀର୍ଥଙ୍କର ମହାବୀରଙ୍କ ବେଳେ ଚଂପା ରାଜ୍ୟର ବଣିକଙ୍କ ବୋଇତ କଳିଙ୍ଗର ପିଥୁଣ୍ଡ ବନ୍ଦରରେ ଆସି ଲାଗୁଥିଲ ଏବଂ କଳିଙ୍ଗ ଓ ଚଂପା ଦେଶର ବହୁ ସୌଦାଗର ପରିବାର ବୈବାହିକ ସୂତ୍ରରେ ପରସ୍ପର ଆବଦ୍ଧ ରହୁଥିଲେ । କଳିଙ୍ଗର ପିଥୁଣ୍ଡ ବନ୍ଦର ପୂର୍ବେ ଜୈନମାନଙ୍କ ଏକ ପ୍ରସିଦ୍ଧ ତୀର୍ଥ ଥିଲ ଏବଂ ସେଇଠି କାଳିଙ୍ଗଜିନାଙ୍କ ପ୍ରତିମା ବହୁକାଳରୁ ପୂଜିତ ହୋଇ ଆସୁଥିବା କଥା ଖାରବେଳଙ୍କ ହାତୀଗୁମ୍ଫା ଲିପିରୁ ଜଣାପଡ଼େ ।

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀର ଆରମ୍ଭରେ ପାରସ୍ୟ ସମ୍ରାଟ୍ ଡେରାୟୁସ୍ ଭାରତଠୁ ପାରସ୍ୟ ବାଟରେ ମିଶରପର୍ଯ୍ୟନ୍ତ ସମୁଦ୍ରରେ ଏକ ବାଣିଜ୍ୟ ପଥ ଠିକଣାଇବା ପାଇଁ ବହୁ ସୁଦକ୍ଷ ନାବିକଙ୍କୁ ପଠାଇଥିଲେ । କାରିଅଣ୍ଡାର ନୌବିଶାରଦ ସିଲାକ୍ସ ଏ ନାବିକ ଦଳର ନେତାଥିବା ସେ କାଳର ଐତିହାସିକ ହେରୋଡୋଟସ ଲେଖି ଯାଇଛନ୍ତି । ସିଲାକ୍ସ୍ ସିନ୍ଧୁନଦୀରେ ନୌକାବାହି ଆରବ ସାଗର ମଧ୍ୟରେ ପ୍ରବେଶ କରିଥିଲେ ଏବଂ ସିନ୍ଧୁ ମୁହାଣଠାରୁ ପାରସ୍ୟ ଉପସାଗର ବାଟେ ନୀଳନଦୀ ମୁହାଣ ପର୍ଯ୍ୟନ୍ତ ଜାହାଜରେ ବୁଲି ଏକ ନିରାପଦ ବାଣିଜ୍ୟ ପଥର ସନ୍ଧାନ ଦେଇ ଯାଇଥିଲେ । ସିଲାକ୍ସଙ୍କ ଏ ବାଣିଜ୍ୟ ପଥ ଖୋଜା ଚାଲିଥିବା-ବେଳେ ତେଣେ ଭାରତର ପୂର୍ବ ଉପକୂଳରେ ଏକ ଐତିହାସିକ କଳଯାତ୍ରାର ଆୟୋଜନ ହେଉଥାଏ । ବୁଦ୍ଧଙ୍କ ପରିନିର୍ବାଣ ପରେ



ମହେଞ୍ଜୋଦାରୋର ଜାହାଜ
( ଖ୍ରୀଷ୍ଟପୂର୍ବ ତିନିହଜାର ବର୍ଷର )

ବଙ୍ଗରାଜକୁମାର ବିଜୟ ତାମ୍ରଲିପ୍ତି ବନ୍ଦରରୁ ସଦଳ ବଳରେ ବାହାରି ସିଂହଳ ଦ୍ୱୀପରେ ପଦାର୍ପଣ କରିଥିଲେ । ବିଜୟ ହୋଇଲେ ସିଂହଳର ପ୍ରଥମ ରାଜା ଏବଂ ତାଙ୍କ ଏ ଆଗମନ ଚିରସ୍ମରଣୀୟ ଘଟଣାରୂପେ ସ୍ଥାନ ପାଇଛି ସିଂହଳ ଓ ଭାରତର ଇତିହାସରେ ।

## ଗ୍ରୀକ୍ ସଂପର୍କ

ଆଲେକ୍ଜାଣ୍ଡରଙ୍କ ଦିଗ୍‌ବିଜୟ ପଶ୍ଚିମ ଏସିଆ ଖଣ୍ଡର ଇତିହାସରେ ବହୁ ପରିବର୍ତ୍ତନ ସୃଷ୍ଟି କରିଥିଲା । ଏହି ପରିବର୍ତ୍ତନର ପ୍ରଭାବ ଭାରତର ଅର୍ଥନୀତି ଓ ବହି-ର୍ବାଣିଜ୍ୟ ଉପରେ ପ୍ରକାଶ ପାଇବା ଅତି ସ୍ୱାଭାବିକ । ମିଶରଠୁଁ ଭାରତଯାଏ ବ୍ୟାପିଥିବା ପାରସ୍ୟ ସାମ୍ରାଜ୍ୟ ଧ୍ୱଂସ ହେବା ସଙ୍ଗେ ସଙ୍ଗେ ପାରସିକ ବଣିକଙ୍କ ଜାହାଜ ଭାରତର ଉପକୂଳରୁ ଉଭେଇ ଯିବାକୁ ଲାଗିଲା । ପାରସ୍ୟ ଏବଂ ମିଶରର ବିଶାଳ ଓ ମନ୍ଦଗାମୀ ଜାହାଜଗୁଡ଼ିକ ବଦଳରେ ଗ୍ରୀକ୍ ନାବିକଙ୍କ କ୍ଷୁଦ୍ର କ୍ଷୁଦ୍ର ବେଗଗାମୀ ନୌକା କ୍ରମେ ଆରବ ସାଗରରେ ବହୁ ପରିମାଣରେ ଦେଖାଦେଲା । ଆଲେକ୍ଜାଣ୍ଡର ଭାରତରୁ ଫେରିବାବେଳେ ସେନାପତି ନିଆରକସ୍ ଏକ ନୌଶକ୍ତି ଗଢ଼ି ସିନ୍ଧୁ ମୁହାଣଠାରୁ ବେବିଲୋନ୍ ଯାଏ ଯେଉଁ ଜଳଯାତ୍ରା କରିଥିଲେ ତାହା, ପରବର୍ତ୍ତୀ କାଳର ଗ୍ରୀକ୍ ନାବିକଙ୍କୁ ନୂତନ ପ୍ରେରଣା ଦେଇଥିଲା । କୌତୂହଳୀ ଗ୍ରୀକ୍ ଜାତି କ୍ରମେ ଏସିଆ ଓ ଆଫ୍ରିକା ଉପକୂଳରେ ବହୁ ରହସ୍ୟ ଉଦ୍‌ଘାଟନ କରି ଭାରତୀୟ ନୌଚାଳନାରେ ଏକ ନୂତନ ଯୁଗ ସିଦ୍ଧାଇଲେ ।

ଆଲେକ୍ଜାଣ୍ଡର ମଲାପରେ ସେଲ୍ୟୁକସ୍‌ଙ୍କ ସିରିଆ ଓ ଟୋଲେମିଙ୍କ ଇଜିପ୍ଟ ସହିତ ଭାରତର ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତରଙ୍ଗତା ବଢ଼ି

ଉଠିଲା । ଭାରତର ହସ୍ତୀ, ମୟୂର, ସୂକ୍ଷ୍ମବସ୍ତ୍ର ଓ ମୂଲ୍ୟବାନ ପ୍ରସ୍ତର ଗ୍ରୀକ୍‌ମାନଙ୍କ ପକ୍ଷେ ସେତେବେଳେ ଥିଲା ଅତି ଲୋଭନୀୟ ପଣ୍ୟ । ଖ୍ରୀଷ୍ଟପୂର୍ବ ୨୭୧ରେ ଦ୍ୱିତୀୟ ଟୋଲେମି ଆଲେକ୍‌ଜାଣ୍ଡ୍ରିଆଠାରେ ଯେଉଁ ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ ସେଥିରେ ସର୍ବସାଧାରଣଙ୍କ ବିଶେଷ ଦୃଷ୍ଟି ଆକର୍ଷିତ ହୋଇଥିଲା ଭାରତୀୟ ନାରୀ, ମୟୂର, ସ୍ୱର୍ଣ୍ଣ ଓ କାର୍ପାସ ଉପରେ । ଗ୍ରୀକ୍ ନାରୀ ଓ ମଦ୍ୟର ଗ୍ରାହକ ସେତେବେଳେ ଭାରତରେ ମଧ୍ୟ ବଢ଼ି ଯାଇଥିବା ମନେହୁଏ । ଶାଳ ପ୍ରାଂଶୁ ଦେହା ଗ୍ରୀକ୍ ନାରୀ ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କର ଶରୀର ରକ୍ଷିଣୀରୂପେ ବହୁ ସଂଖ୍ୟାରେ ନିଯୁକ୍ତ ହେଉଥିଲେ ଏବଂ ଧନୁଶର ଓ କୃପାଣ ଧରି ସେମାନେ ସମ୍ରାଟଙ୍କୁ ଦିନରାତି ଘେରି ରହୁଥିଲେ । ଟୋଲେମି ଦ୍ୱିତୀୟଙ୍କଠାରେ ସମ୍ରାଟ୍ ବିନ୍ଦୁସାରଙ୍କ ଚାହିଁବାର ଥିଲା ମିଠାମଦ, ଶୁଷ୍କ ଡିମ୍ବିରିଫଳ ଏବଂ ଗ୍ରୀକ୍ ଦାର୍ଶନିକ ।

ଗ୍ରୀକ୍ ଦେଶମାନଙ୍କ ସହ ଭାରତର ଯୋଗାଯୋଗ ଥିଲା ଦୁଇଟି ସ୍ଥଳପଥ ଓ ଗୋଟିଏ ଜଳପଥ ମଧ୍ୟ ଦେଇ । ପ୍ରଧାନ ସ୍ଥଳ ପଥଟି ଭାରତର ଉତ୍ତର ପଶ୍ଚିମରେ ଥିବା ବେକ୍‌ଟ୍ରା ସହରଠୁ ହେକାଟୋଂଫିଲସ୍ ଓ ଏକବାଟନା ଦେଇ ସୁସା ପର୍ଯ୍ୟନ୍ତ ଲମ୍ବିଥିଲା । ଦ୍ୱିତୀୟଟି ଗଲିଥିଲା ଉମେଟ୍ରିଆ ଠାରୁ ସିସ୍ଥାନ ବାଟରେ ପାରସ୍ୟ ଉପସାଗରର କୂଳ ଯାଏ । କିନ୍ତୁ ଏ ସ୍ଥଳପଥ ଦୁଇଟି ଭାରତୀୟ ବଣିକଙ୍କ ପକ୍ଷେ ଆଦୌ ନିରାପଦ ନ ଥିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଶକମାନେ ଜକର୍ଟିସ୍ ଅବବାହିକା ଦଖଲ କରିବା ପରେ ଏବଂ ତେଣେ ପାର୍ଥିଆ ଦେଶ ଶକ୍ତିଶାଳୀ ହୋଇ ମୁଣ୍ଡଟେକି ଉଠିବା ସଂଗେ ସେ ସବୁ ଅଂଚଳ ଗ୍ରୀକ୍‌ମାନଙ୍କର ମଧ୍ୟ ଅଗମ୍ୟ ହେଲା । ତେଣୁ ଜଳପଥ ସବୁ ଗ୍ରୀକ୍ ଓ ଭାରତୀୟଙ୍କ ପକ୍ଷେ ସୁବିଧାଜନକ ଥିଲା ଏବଂ ଏ ସବୁର ମଧ୍ୟ ଦେଇ

ଦୁଇଦେଶ ମଧ୍ୟରେ ପଣ୍ୟଦ୍ରବ୍ୟ ଓ ଭାବଧାରର ବିନିମୟ ବହୁକାଳଧରି ଚାଲିଲା । ଚାରୋଟି ଜଳପଥରୁ ବହୁଦିନରୁ ଜଣାଥିବା ପଥଟି ଆରବ, ପାରସ୍ୟ ଓ ପଶ୍ଚିମ ଭାରତର ଉପକୂଳ ପାଖେ ପାଖେ ରହିଥିଲା ଏବଂ ଦ୍ୱିତୀୟଟି ସମୁଦ୍ର ଭିତରକୁ ଅଳ୍ପ ପଶିଯାଇ ଆରବ ଉପକୂଳଠାରୁ ଚାଲିଥିଲା ସିନ୍ଧୁ ପ୍ରଦେଶର ପାଟାଲେନ୍‌ଆ ପର୍ଯ୍ୟନ୍ତ । ତୃତୀୟ ପଥଟି ଆରବର ଇଉଡେମନ୍ (ଏଡେ଼ନ୍) ବନ୍ଦରଠାରୁ ଭାରତର ବାରଗାଜା (ବ୍ରୋଚ୍) ଯାଏ ବିସ୍ତୃତ ହୋଇଥିଲା ଏବଂ ଚତୁର୍ଥଟି ସଂଯୋଗ କରୁଥିଲା ଆଫ୍ରିକାର ସୋମାଲି ଉପକୂଳ ସହିତ ଭାରତର ମୁଜିରିସ୍ (ମାଲବାର ?) ବନ୍ଦରକୁ ।

ଏ ଜଳପଥ ସମ୍ପର୍କରେ ହିପାଲସ୍ ନାମକ ଜଣେ ଗ୍ରୀକ୍ ନାବିକଙ୍କ ଆବିଷ୍କାର ଉଲ୍ଲେଖଯୋଗ୍ୟ ବୋଲି ମନେ ହୁଏ । ହିପାଲସ୍ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ଆରମ୍ଭରେ ଭାରତ ମହାସାଗରର ମୌସୁମୀ ବାୟୁର ଗତିବିଧି ସହିତ ନିରୂପଣ କରି ପାରିଥିଲେ । ସେ ବହୁକାଳ ଗବେଷଣା କରି ପ୍ରକାଶ କଲେ ଯେ ଜୁନ୍‌ଠାରୁ ଅକ୍ଟୋବର ଯାଏ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ଏବଂ ନଭେମ୍ବରଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ଉତ୍ତର ପୂର୍ବ ବାୟୁ ସେଠାରେ ନିୟମିତ ବହେ । ଏ ନୂତନ ତଥ୍ୟ ସେ କାଳର ନୌଚାଳନାରେ ବିପ୍ଳବ ଆଣି ପାରିଥିଲା ଏବଂ ନାବିକମାନେ ଏହା ପରେ ଉପକୂଳ ମାର୍ଗ ଛାଡ଼ି ସମୁଦ୍ର ଭିତରେ ପ୍ରବେଶ କରିବାପାଇଁ ଆଉ ଡରିଲେ ନାହିଁ । ଉପରେ ଦିଆଯାଇଥିବା ଚାରୋଟି ଜଳପଥରୁ ତୃତୀୟଟି ଓ ଚତୁର୍ଥଟି ହିପାଲସ୍‌ଙ୍କ ପରେ ନିରାପଦ ବୋଲି ବିବେଚିତ ହେଲା ଓ ଫଳରେ ମିଶରଠାରୁ ଭାରତ ପର୍ଯ୍ୟନ୍ତ ଦୂରତା କମିଗଲା । ଆଲେକ୍‌ଜାଣ୍ଡ୍ରିଆ ବନ୍ଦରଠାରୁ ଜୁଲାଇ ମାସରେ ବାହାରି ଗ୍ରୀକ୍ ନାବିକମାନେ ଆରବ ସାଗରର ଅନୁକୂଳ ବାୟୁରେ

ଭାସିଯାଇ ପହଞ୍ଚି ପାରିଲେ ସୁଦୂର ମୁଜରିସ୍‌ରେ ଅଗଷ୍ଟ ଶେଷକୁ କିମ୍ବା ସେପ୍‌ଟେମ୍ବର ଆରମ୍ଭ ବେଳକୁ । ସୁତରାଂ ହିପାଲସ୍‌ଙ୍କ ଆବିଷ୍କ୍ରିୟା ସମୟ ଓ ଦୂରତା ଉପରେ ମନୁଷ୍ୟର ପ୍ରଥମ ବିଜୟ ଘୋଷଣା କଲା ଏବଂ ଏହା ଦ୍ୱାରା ପୁଣି ମନୁଷ୍ୟ ନିଜର ଆତ୍ମଶକ୍ତି ଅନୁଭବ କରିବାରେ ସମର୍ଥ ହେଲା ।

ହିପାଲସ୍‌ଙ୍କ ପରେ ପଶ୍ଚିମା ଦେଶମାନଙ୍କ ସହିତ ଭାରତର ବାଣିଜ୍ୟିକ ଓ ସାଂସ୍କୃତିକ ଯୋଗାଯୋଗ ବ୍ୟାପକ ହୋଇ ଉଠିଲା । ସେତେବେଳେ ଏ ଯୋଗାଯୋଗର ବିବରଣୀ ଲେଖିବାପାଇଁ ବହୁ ଲେଖକ ଏବଂ ଐତିହାସିକ ମଧ୍ୟ ପରିଦୃଷ୍ଟ ହେଲେ । ସମୁଦ୍ର ବାଣିଜ୍ୟର ରୂପରେଖ ଦେବାପାଇଁ ସେ କାଳରେ ଯେତେ ପ୍ରକାର ପୁସ୍ତକ ରଚିତ ହୋଇଥିଲା ସେ ମଧ୍ୟରେ "ପେରିପ୍ଲସ୍ ଅଫ୍ ଦି ଏରିଥ୍ରିଏନ୍ ସି" ବା "ଲୋହିତ ସାଗରରେ ନୌଚାଳନା" ନାମକ ପୁସ୍ତକ ସର୍ବଶ୍ରେଷ୍ଠ । ପୁସ୍ତକ ପ୍ରଣେତାଙ୍କ ନାମ ଅଜ୍ଞାତ ଥିବା ହେତୁ ସେ "ପେରିପ୍ଲସ୍" ନାମରେ ଏବେ ସୁପରିଚିତ । ସେ ଥିଲେ ମିଶର ନିବାସୀ ଗ୍ରୀକ୍ ନାବିକ ଏବଂ ସେ ବିଶେଷ ବିଦ୍ୱାନ୍ ନ ହେଲେହେଁ ସୁଦକ୍ଷ ବଣିକ ଥିବାର ତାଙ୍କ ଲେଖାରୁ ସ୍ପଷ୍ଟ ସୂଚନା ମିଳେ । ସେ ଆଲେକ୍‌ଜାଣ୍ଡ୍ରିଆ ବନ୍ଦରଠାରୁ ସମ୍ଭବତଃ ୬୦ ଖ୍ରୀଷ୍ଟାବ୍ଦରେ ବାହାରି ଲୋହିତସାଗରର ମଧ୍ୟଦେଇ ଏବଂ ଆରବ ସାଗରର ବକ୍ର ଗର୍ଜନ ମଧ୍ୟରେ ତାଙ୍କ କ୍ଷୁଦ୍ର ଜାହାଜଟି ଭସାଇ ଭାରତ ଉପକୂଳରେ ପହଞ୍ଚିଥିଲେ । କାଶ୍ମୀର ଓ ଗାନ୍ଧାର ଆଦି ରାଜ୍ୟ ସହିତ ଏବଂ ଦକ୍ଷିଣ ଭାରତର ବହୁ ଅଞ୍ଚଳର ଅବସ୍ଥା ସହିତ ତାଙ୍କର ପରିଚୟ ଘଟିଥିଲା ଏବଂ ସେ ସିନ୍ଧୁ ମୁହାଣଠୁ ମହାନଦୀ ମୁହାଣ ପର୍ଯ୍ୟନ୍ତ ଜଳଯାତ୍ରା କରି ନାନା ଅଭିଜ୍ଞତା ଅର୍ଜନ କରିଥିଲେ । ସେତେବେଳେ ଭାରତର ଉପକୂଳରେ ମୀନଗର, ତଗର, ସୁପ୍ପର ( ସୋପାରା ), ବାରିଗାଜ ( ବ୍ରୋଚ୍ ), ଓଜେନ

(ଉଜ୍ଜୟିନୀ), କେଲନ ( କଲ୍ୟାଣ ), ମୁଜରସ୍ ( ମାଲବାର ? ), ମେଲଜାଗର (ରାଜାପୁର ?), ଦାମିରକା (ଦ୍ରାମିଲ), ଚେରୋବୋଥ୍ରା ( ଚେରପୁତ୍ର ବା କେରଳପୁତ୍ର ), ମନ୍ଦଗୋର ( ମଙ୍ଗଳପ୍ରିର ? ), ଦୋଶରେନ ( ଦଶାର୍ଣ୍ଣ ) ଆଦି ବହୁ ବିଖ୍ୟାତ ବନ୍ଦର ଓ ନଗର ଅବସ୍ଥିତ ଥିଲା ଏବଂ ସେଗୁଡ଼ିକରେ ହଜାର ହଜାର ପଶ୍ଚିମା ବଣିକ ନାନାବିଧ ବାଣିଜ୍ୟ କାରବାରରେ ବର୍ଷ ସାରା ବ୍ୟସ୍ତ ଥିଲେ । କାର୍ପାସ ଓ ରେଶମର ସୂକ୍ଷ୍ମ ବସ୍ତ୍ର, ସୁନାରୁପାର ଅଲଙ୍କାର ଓ ମୂଲ୍ୟବାନ ପ୍ରସ୍ତର, ଚନ୍ଦନ ଓ ଶିଶୁ କାଠ, ହାତୀ ଦାନ୍ତ, ଚମଡ଼ା ଓ ଶିଙ୍ଗର ନାନାପ୍ରକାର କାରୁକାର୍ଯ୍ୟ ଏବଂ ବିବିଧ ଜାତିର ପଶୁ ପକ୍ଷୀ ଏ ସବୁ ବନ୍ଦରରୁ ଜାହାଜରେ ଯାଉଥିଲା ବିଦେଶକୁ । ପୁଣି ଦେଶାନ୍ତରରୁ ଏ ଦେଶକୁ ଅଣା ହେଉଥିଲା ତମ୍ବା, ଟିଣ, ପ୍ରବାଳ ଓ ନାନାବର୍ଣ୍ଣର କାଚ ତିଆରି ପଦାର୍ଥ, ବହୁବିଧ ମଦ ଓ ମୂଲ୍ୟବାନ୍ ମଦ୍ୟ ପାତ୍ର, ନାନାପ୍ରକାର ସୁବାସିତ ତୈଳ ଓ ମଲମ ଏବଂ ସୁଶ୍ରୀବାଳକ ଓ ସୁକଣ୍ଠୀ ବାଳିକା । ପେରିପ୍ଲସ୍ ଅତି ସରଳ ଓ ସଂଯତ ଭାବରେ ଭାରତୀୟ ରାଜାମାନଙ୍କ ଆଡ଼ମ୍ବରପ୍ରିୟତା, ଧନିକ ଶ୍ରେଣୀର ଉଦାରତା, ସାଧାରଣ ନାଗରିକଙ୍କ ଶିଷ୍ଟାଚାର ଏବଂ ନାବିକଙ୍କର ନୌକୁଶଳତା ଆଦିର ନିଖୁଣ ଚିତ୍ର ଦେଇ ଯାଇଅଛନ୍ତି । ତାଙ୍କ ବିବରଣୀରେ ନାବିକ ଜୀବନର ସ୍ୱାଭାବିକ ଆନନ୍ଦ ବାସ୍ତବତାର ସୌନ୍ଦର୍ଯ୍ୟ ଏବଂ ସର୍ବୋପରି ଅଭିଜ୍ଞତାର ଚୁମ୍ବକ ଆକର୍ଷଣ ଭରି ରହିଛି । ଭାରତର ଅତୀତ ନୌବାଣିଜ୍ୟର ଗୌରବାସ୍ପଦ ସ୍ମରଣିକା ରୂପେ ଆଜି ସମାଦର ଲାଭ କରିଛି ତାଙ୍କ ଏ କ୍ଷୁଦ୍ର ପୁସ୍ତିକା ।

ଗ୍ରୀକ୍ ଜାତିସହିତ ବହୁକାଳଧରି ଭାରତୀୟଙ୍କ ଯେଉଁ ଘନିଷ୍ଠ ସମ୍ପର୍କ ଥିଲା ତା ଫଳରେ ଏହି ଉଭୟ ସଭ୍ୟଜାତି ମଧ୍ୟରେ ବହୁପ୍ରକାର

ଙ୍ଗାସ୍ଥ ତଙ୍କ ବାନ୍ଦୀୟ ସମ୍ଭବ ହୋଇପାରିଥିଲା । ଭାରତୀୟ ପଣ୍ଡିତମାନେ ଗ୍ରୀକ୍ ପଣ୍ଡିତମାନଙ୍କଠାରୁ ଜ୍ୟୋତିଷ ଓ ଗଣିତ ବିଦ୍ୟାର ଅନେକ ତଥ୍ୟ ଆହରଣ କରିଥିବା ସୂଚନା ମିଳେ । ଗାଣିତିକ ପ୍ରଭାବ ମିଶରର ଆଲେକ୍‌ଜାଣ୍ଡ୍ରିଆରୁ ବାବିଗାଜା ବନ୍ଦର ବାଟେ ଭାରତକୁ ଆସିଥିଲା ଏବଂ ଉଜ୍ଜୟିନୀ ଥିଲା ଏ ଭାବଧାରାର କେନ୍ଦ୍ର । ପରବର୍ତ୍ତୀକାଳର ପୌଲିଷ ସିଦ୍ଧାନ୍ତ ଓ ରୋମକ ସିଦ୍ଧାନ୍ତ ଯଥାକ୍ରମେ ଆଲେକ୍‌ଜାଣ୍ଡ୍ରିଆର ପ୍ରସିଦ୍ଧ ଜ୍ୟୋତିଷ ପଲ୍ ଏବଂ ରୋମୀୟ ଗାଣିତିକଙ୍କ ନାମାନୁସାରେ ନାମିତ ହୋଇଥିବାର ମନେହୁଏ । ବରାହମିହିର ଗ୍ରୀକ୍‌ମାନଙ୍କୁ ଲକ୍ଷ୍ୟ କରି କହିଛନ୍ତି—ଯବନ ହେଲେହେଁ ସେମାନେ ଜ୍ୟୋତିଷ ଓ ଗଣିତ ଜ୍ଞାନ ନିମନ୍ତେ ବ୍ରାହ୍ମଣଙ୍କର ପୁଭା ନମସ୍ୟ । କିନ୍ତୁ ଗ୍ରୀକ୍ ଭାଷାର ପ୍ରଭାବ ଭାରତୀୟ ସାହିତ୍ୟରେ ବିଶେଷ ପଡ଼ିନଥିବା ଜଣାଯାଏ । "ନ ପଠେତ୍ ଯବନୀଭାଷା ପ୍ରାଣୈଃ କଣ୍ଠଗତୈ ଅପି" ଏ ପ୍ରବଚନଟି ଭାରତରେ ଅତି ପ୍ରାଚୀନ କାଳରୁ ପ୍ରଚଳିତ । ଏହା ସତ୍ତ୍ୱେ ବହୁ ଗ୍ରୀକ୍‌ଶବ୍ଦ ଯଥା କଲମ, ପୁସ୍ତକ, ଫଳକ, ପୀଠକ, କୋଣଆଦି ଭାରତୀୟ ଭାଷାର ପୁଷ୍ଟିସାଧନ କରିଥିବା ଅସ୍ୱୀକାର କରାଯାଇ ପାରିବନାହିଁ । ଭାରତୀୟ ନାଟକମାନଙ୍କରେ ଗ୍ରୀକ୍ ନାଟକମାନଙ୍କର ପ୍ରଭାବ ଥିବା କଥା ଅନେକ ଗବେଷକ କହନ୍ତି । ଶୂଦ୍ରକଙ୍କ ମୃଚ୍ଛକଟିକ ଏବଂ କାଳିଦାସଙ୍କ ଶକୁନ୍ତଳା ନାଟକରେ ସ୍ମୃତି, ଦୈବନିର୍ଦ୍ଦେଶ, ଆକସ୍ମିକ ଘଟଣା, ଶ୍ରଦ୍ଧା, ବିଶ୍ୱାସ ପ୍ରଭୃତି ଯେଉଁ ଭୂମିକା ନେଇ ଅଛନ୍ତି ତାହା ଗ୍ରୀକ୍ ନାଟ୍ୟଶୈଳୀର ଅନୁରୂପ ବୋଲି ଯୁକ୍ତି କରାଯାଏ । ଭାରତୀୟ ନାଟକର ବିଦୂଷକ ଓ ସୂତ୍ରଧର ଗ୍ରୀକ୍ ନାଟକର ସେ ଜାତୀୟ ଚରିତ୍ରର ରୂପାନ୍ତର ବୋଲି ଅନେକଙ୍କ ବିଶ୍ୱାସ । ଏପରିକି ନାଟକର ବିଷୟ ବସ୍ତୁକୁ ମଧ୍ୟ ପାଞ୍ଚଟି ଅଙ୍କରେ ବିଭକ୍ତ କରିବା ପ୍ରଥାରେ ଗ୍ରୀକ୍ ପ୍ରଭାବ ଥିବା କେହି କେହି ମନେ କରନ୍ତି । ଯବନିକା ଶବ୍ଦରେ ଗ୍ରୀକ୍ ସମ୍ପର୍କର

ଯେଉଁ ସୂଚନା ମିଳେ ତାହା ବିବାଦୀୟ ହୋଇ ରହିଛି । ପ୍ରାଚୀନ ଗ୍ରୀସର ଯେଉଁ ଅଭିନୟରେ କେବଳ ଅଙ୍ଗଭଙ୍ଗି ଦ୍ୱାରା ଭାବ ପ୍ରକାଶ କରା ଯାଉଥିଲା ସେଥିରେ ପରଦା ଦେବାର ଆବଶ୍ୟକତା ଥିଲା । କିନ୍ତୁ ଅନ୍ୟ ସବୁ ପ୍ରକାର ନାଟକରେ ପରଦା ବ୍ୟବହାର ଆଦୌ ଦେଖା ନ ଥିଲା । ଯବନ ବଣିକ ଏ ଦେଶକୁ ଆଣୁଥିବା ମୋଟା କନାରେ ନାଟକର ପରଦା ତିଆରି ହେଉଥିଲା ଓ ସେଇଥି-ପାଇଁ ତାହା ଯବନିକା ନାମରେ ପରିଚିତ ଥିବାର ଅନୁମାନ କରାଯାଏ ।

ଭାରତୀୟ ଦର୍ଶନ ଓ ଚିନ୍ତାଧାରାର ପ୍ରଭାବ ଗ୍ରୀକ୍ ଦାର୍ଶନିକଙ୍କ ଚିନ୍ତାରେ ବହୁକାଳରୁ ଦେଖିବାକୁ ମିଳେ । ଉପନିଷଦ୍‌ର ସଂସାର-ବାଦ, ସାଂଖ୍ୟର ପୁରୁଷ-ପ୍ରକୃତି ବାଦ ଏବଂ ବେଦାନ୍ତର ଆତ୍ମା ଓ ମାୟାବାଦ ଥେଲ୍‌ସ୍ ଓ ପିଥାଗୋରସଙ୍କଠୁଁ ଆରମ୍ଭକରି ପ୍ଲେଟୋଙ୍କ ଯାଏ ଗ୍ରୀକ୍ ଦାର୍ଶନିକଙ୍କୁ ପ୍ରଭାବିତ କରି ପାରିଛି । ଅଶୋକଙ୍କ କାଳରୁ ବୌଦ୍ଧଧର୍ମର ପ୍ରସାର ଗ୍ରୀକ୍ ଜଗତରେ ଏକ ନୂତନ ଚେତନା ଆଣିଲା ଏବଂ ଆଲେକଜାଣ୍ଡ୍ରିଆ ବିଶ୍ୱବିଦ୍ୟାଳୟରେ ବହୁ ବ୍ରାହ୍ମଣ ଓ ବୌଦ୍ଧ ପଣ୍ଡିତ ଭାରତର ଧର୍ମ ଓ ଦର୍ଶନ ଅନୁଶୀଳନ କରି ଖ୍ୟାତି ଲାଭ କରି ପାରିଥିଲେ ।

ସୁତରାଂ ଗ୍ରୀସ୍ ଓ ଭାରତମଧ୍ୟରେ ବହୁ କାଳରୁ ଥିବା ନୌଚାଳନା ସଂପର୍କ କେବଳ ବାଣିଜ୍ୟକ ଓ ଆର୍ଥିକ ନ ଥିଲା; ତାହା ଉଭୟ ସଭ୍ୟ ଦେଶର ସଂସ୍କୃତି ଓ ଚିନ୍ତାଧାରାର ସମାବେଶ ଆଣି ଏକ ନୂତନ ପରଂପରା ଗଢ଼ାଇ ପାରିଥିଲା ।

## ବୌଦ୍ଧଧର୍ମର ପ୍ରଭାବ

ବୌଦ୍ଧଧର୍ମର ଉତ୍‌ଥାନ ପରେ ଭାରତୀୟ ସଂସ୍କୃତି ଏସିଆ ମହାଦେଶରେ ନୂତନ ଜାଗରଣର ସୂଚନା ଦେଲା । ବୌଦ୍ଧ ଭାରତ ମାନବ ଜାତିର ଆତ୍ମଚେତନା ଜଗାଇବାପାଇଁ ଯେଉଁ ସାମ୍ୟ ଓ ମୈତ୍ରୀ ବାଣୀ ପ୍ରଚାର କଲା, ତାହା ଏସିଆର ବିଭିନ୍ନ ଦେଶକୁ ସହଜରେ ପ୍ରଭାବିତ କଲା । ସମ୍ରାଟ୍ ଅଶୋକଙ୍କ ବୌଦ୍ଧ ହେବା ପରେ ଶାକ୍ୟମୁନିଙ୍କ ଧର୍ମ କେବଳ ଭାରତରେ ଆବଦ୍ଧ ନ ରହି ସାଧାରଣ ମାନବର ଧର୍ମରୂପେ ଚାରିଆଡ଼େ ପ୍ରସାର ଲାଭ କଲା । ବୌଦ୍ଧଧର୍ମର ପ୍ରେରଣା ଭାରତର ଭୌଗୋଳିକସୀମା ଲଂଘନ କରି ଦେଶାନ୍ତର ଓ ଦ୍ୱୀପାନ୍ତରକୁ ବ୍ୟାପିଗଲା ଓ ଭାରତ ଆନ୍ତର୍ଜାତିକ କ୍ଷେତ୍ରରେ ଅଗ୍ରଣୀ ହେଲା । ଅଶୋକଙ୍କ ଧର୍ମଦୂତମାନେ ପଶ୍ଚିମରେ ସିରିଆ, ମିଶର, ସିରିନି, ମାସିଡ଼ୋନିଆ, ଏପିରସ୍ ଆଦି ଯବନ-ରାଜ୍ୟରେ ଧର୍ମବିଜୟର ସୂତ୍ରପାତ କଲେ । ଡେରାୟୁସ୍, ଜାରେକ୍‌ସସ୍ ଓ ଆଲେକ୍‌ଜାଣ୍ଡର୍‌ଙ୍କ ଦିଗ୍‌ବିଜୟରେ ନିଷ୍ପେଷିତ ହୋଇଥିବା ଦେଶମାନ ପ୍ରେମ ଓ ଭ୍ରାତୃତ୍ୱର ମହାନ୍ ଆଦର୍ଶରେ ଅନୁପ୍ରାଣିତ ହୋଇ-ଥିଲେ । ଆରବସାଗରରେ ଅଶୋକଙ୍କ ଧର୍ମତରୀ ଆଶା ଓ ଆଲୋକ ନେଇ ପଶ୍ଚିମଗାମୀ ହେଲାବେଳେ ତେଣେ ବଙ୍ଗସାଗର ମଧ୍ୟ "ବୁଦ୍ଧଂ ଶରଣଂ ଗଚ୍ଛାମି" ମନ୍ତ୍ରରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ଯେଉଁଦିନ କୁମାର ମହେନ୍ଦ୍ର ଓ କୁମାରୀ ସଂଘମିତ୍ରା ଭିକ୍ଷୁ ଓ ଭିକ୍ଷୁଣୀ ବେଶରେ ବୋଧିଶାଖା ନେଇ ତାମ୍ରଲିପ୍ତିଠାରେ ବୋଇତ ଚଢ଼ିଲେ ସେଦିନଠୁଁ ଦକ୍ଷିଣ ପୂର୍ବ ଏସିଆର ଇତିହାସରେ ଏକ ଗରିମାମୟ ଅଧ୍ୟାୟ ଆରମ୍ଭ ହେଲା । ମହେନ୍ଦ୍ର ଓ ସଂଘମିତ୍ରା କଳିଙ୍ଗର ଅଷ୍ଟ ପରିବାର ଗହଣରେ ପିତା ଅଶୋକଙ୍କଠାରୁ ବିଦାୟ ନେଇ ବଙ୍ଗ-

ସାଗରରେ ଝାଁପିଯାଇ ପଦାର୍ପଣ କଲେ ଦେବପ୍ରିୟ ତିଷ୍ୟଙ୍କ ସିଂହଳରେ । ମୁକ୍ତାମାଳିନୀ ତାମ୍ର-ପର୍ଣ୍ଣୀ ଶାକ୍ୟସିଂହଙ୍କ ଧର୍ମରେ ଦୀକ୍ଷିତା ହୋଇ ଧନ୍ୟା ହେଲା । ଠିକ୍ ସେତେବେଳେ ସ୍ଥବିର ଶୋଣ ଓ ଉତ୍ତରଙ୍କ ଧର୍ମତତ୍ତ୍ୱ ତାମ୍ରଲିପ୍ତି ଛାଡ଼ି ଲାଗିଲା ସୁବର୍ଣ୍ଣଭୂମିରେ ଏବଂ ଇରାବତୀର ସବୁଜ ଉପତ୍ୟକା ଆଲୋକିତ ହୋଇଉଠିଲା ବୌଦ୍ଧ ଧର୍ମର ଦୀପଶିଖାରେ ।

ଦେବପ୍ରିୟ ଅଶୋକଙ୍କ ସମୟରୁ ଏସିଆର ବିଭିନ୍ନ ଦେଶ ସହିତ ଭାରତର ଯେଉଁ ବାଣିଜ୍ୟିକ ସମ୍ବନ୍ଧ ସ୍ଥାପିତ ହେଲା ତାହା ପରବର୍ତ୍ତୀ କାଳରେ ଅଧିକ ପ୍ରଗତିଶୀଳ ହେଲା । ସମ୍ରାଟ୍ କନିଷ୍କଙ୍କ ବେଳେ ଶ୍ୟାମ ଓ କଂବୋଜଠୁ ଯବ, ସୁମାତ୍ରା ଦେଇ ବୌଦ୍ଧଧର୍ମ ବ୍ୟାପିଗଲା ଚୀନ ଏବଂ କୋରିଆ ପର୍ଯ୍ୟନ୍ତ । ପରେ ଜାପାନ ଦ୍ୱୀପମାଳା ମଧ୍ୟ ଚୀନ ଓ କୋରିଆର ଭିକ୍ଷୁଙ୍କ ଦ୍ୱାରା ବୌଦ୍ଧଧର୍ମର ଆଲୋକରେ ଉଦ୍‌ଭାସିତ ହେଲା । ସୁତରାଂ ଶହ ଶହ ବର୍ଷ ଧରି ଏସିଆର ଏପାଖରୁ ସେପାଖ ଯାଏ ଭାରତର ଧର୍ମତତ୍ତ୍ୱ ଭାସିଥିଲା ପ୍ରେମ ଓ ମୈତ୍ରୀର ସୌଧଗଢ଼ି । ଦେଶ ଦେଶରେ ସାହିତ୍ୟ, କଳା ଓ ଭାସ୍କର୍ଯ୍ୟର ରୂପାୟନ ଦେଇ ଉଚ୍ଛ୍ୱସିତ ହୋଇ ଉଠିଥିଲା ବୁଦ୍ଧବାଣୀ । ବଦାନ୍ୟବୃଦ୍ଧି ହେଲେ ଏସିଆର ଆଲୋକ ଏବଂ ଭାରତଭୂମି ହେଲା ବିଶ୍ୱର ବନ୍ଦନୀୟା ।

ଖ୍ରୀଷ୍ଟୀୟ ୬୦ରେ ଦିନେ ଚୀନ ସମ୍ରାଟ ମିଙ୍ଗ୍-ତି ବୁଦ୍ଧଙ୍କ ସୁଠାମ ମୂର୍ତ୍ତି ସ୍ୱପ୍ନରେ ଦେଖି ଭାବବିହ୍ୱଳ ହୋଇ ବୌଦ୍ଧଧର୍ମ କ'ଣ ତାହା ଜାଣିବାପାଇଁ ଦଳେ ପଣ୍ଡିତଙ୍କୁ ଭାରତ ପଠାଇଲେ । ଚୀନ ସମ୍ରାଟଙ୍କ ସ୍ୱପ୍ନ ସମଗ୍ର ଚୀନା ଜାତିର ସ୍ୱପ୍ନ ବା ଆନ୍ତରିକ କାମନାର ସଂକେତ । କାଶ୍ୟପ ମାତଙ୍ଗ ଓ ଧର୍ମରକ୍ଷ ଭାରତରୁ ଯାଇ ଚୀନରେ ପହଞ୍ଚିବା

ପରେ ସେଇଠି ଧର୍ମର ପ୍ଲାବନ ଫିଟି ଏ ସ୍ୱପ୍ନ ସାର୍ଥକ ହେଲା । ହାନ୍‌ବଂଶଠୁ ଝାଙ୍ଗ୍ ଶାସନର ଶେଷଯାଏ ଚୀନ ସହିତ ଭାରତର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ବନ୍ଧ ଦୃଢ଼ ଥିଲା । ଭାରତର ଦାର୍ଶନିକ, ପ୍ରଚାରକ ଓ ବଣିକ ବହୁ ସଂଖ୍ୟାରେ ସେକାଳର ଚୀନା ନଗରୀମାନଙ୍କ ରାସ୍ତାରେ ଦେଖା ଯାଉଥିଲେ ଏବଂ ଶହ ଶହ ଚୀନା ବଣିକ ଓ ପରିବ୍ରାଜକ ଭାରତକୁ ଆସୁଥିଲେ ବାଣିଜ୍ୟ କାରବାର କିମ୍ବା ଧର୍ମଲାଭ ଉଦ୍ଦେଶ୍ୟରେ । ଖ୍ରୀଷ୍ଟୀୟ ପ୍ରଥମ ଶତକରେ ସଂଘରକ୍ଷଙ୍କଠୁ ଦଶମଶତକର ଶୁଭାକରଙ୍କ ଯାଏ ଯେତେ ବୌଦ୍ଧ ଶିକ୍ଷକ ଭାରତରୁ ଚୀନ ଯାଇଛନ୍ତି ଏବଂ ପଞ୍ଚମ ଶତକର ଫାଇହାନଙ୍କଠୁ ସପ୍ତମ ଶତକ ଶେଷରେ ଇତ୍‌ସିଂଙ୍କ ଯାଏ ଯେତେ ଯେତେ ଚୀନ ପରିବ୍ରାଜକ ଭାରତକୁ ଆସିଛନ୍ତି, ସେମାନଙ୍କ ବିବରଣୀ ଯଥାଯଥ ଭାବରେ ଲେଖାଯାଇ ପାରିନାହିଁ । ବ୍ରହ୍ମଦେଶ, ଶ୍ୟାମ, କାମ୍ବୋଜ, ଯବ ଓ ସିଂହଳରୁ ମଧ୍ୟ ବର୍ଷସାରା ହଜାର ହଜାର ଯାତ୍ରୀ ଭାରତକୁ ଆସୁଥିଲେ ସାରନାଥ, ସାଞ୍ଚି, ବୋଧଗୟା, ଅମରାବତୀ ଆଦି ବୌଦ୍ଧ ତୀର୍ଥ ଦର୍ଶନ ପାଇଁ । ନାଳନ୍ଦା ବିଶ୍ୱବିଦ୍ୟାଳୟ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀଠୁ ଦ୍ୱାଦଶଶତାବ୍ଦୀ ଯାଏ ଏସିଆର ସର୍ବଶ୍ରେଷ୍ଠ ଶିକ୍ଷାକେନ୍ଦ୍ର ଥିଲା ଏବଂ ବହୁଦୂର ଦେଶରୁ ଅସଂଖ୍ୟ ଛାତ୍ର, ପଣ୍ଡିତ ଓ ଗବେଷକ ଏଠାକୁ ଆକର୍ଷିତ ହୋଇ ଆସୁଥିଲେ ।

ବୌଦ୍ଧ ଯୁଗରେ ସମୁଦ୍ର ଯାତ୍ରାର ବିକାଶ ହେତୁ ବୋଇତ ତିଆରି ବିଦ୍ୟାର ଅଗ୍ରଗତି ଦେଖାଯାଏ । ଶଙ୍ଖ ଜାତକରେ ୮୦୦ ହସ୍ତ ଲମ୍ବ ଓ ୬୦୦ ହସ୍ତ ପ୍ରସ୍ଥର ବିଶାଳକାୟ ଜାହାଜର ବର୍ଣ୍ଣନା ମିଳେ । ସାଞ୍ଚି ସ୍ତୂପର ତୋରଣରେ ଏବଂ ଅଜନ୍ତା ଗୁମ୍ଫାର ଚିତ୍ରରେ ସେକାଳର ନାନାବିଧ ନୌକାର ପ୍ରତିରୂପ ମିଳେ । ସାଞ୍ଚିର ପୂର୍ବ

ଦ୍ୱାରରେ ଥିବା ତୋରଣରେ ଖୋଦିତ ହୋଇଥିବା ନୌକା ଆଦିମ ଶୈଳୀରେ ଗଢ଼ା, କିନ୍ତୁ ପଶ୍ଚିମ ତୋରଣର ବୋଇତ ଛବିଟିରେ ଶିଳ୍ପ ଚାତୁରୀ ଫୁଟିଉଠିଛି । ବୋଇତଟିର ମଝିରେ ସୁସଜ୍ଜିତ ମଣ୍ଡପ ତିଆରି ହୋଇଛି ଏବଂ ଏହାର ସମ୍ମୁଖ ପଛିସିଙ୍ଗ ଘୋଡ଼କ ଭଳି ଓ ପଛଭାଗ ଠିକ୍ ମତ୍ସ୍ୟାକାର ଦେଖାଯାଉଛି । ଅଜନ୍ତାର ଚିତ୍ରରେ କ୍ଷୁଦ୍ରକାୟ ବହିତ୍ର-ନୌକାଠୁ ବିଶାଳ ବାଣିଜ୍ୟ ତରୀ ଯାଏ ନାନାବିଧ ନୌକାଚିତ୍ର ଅଙ୍କିତ । ଏଠାର ବୋଇତ ସବୁର ମଧ୍ୟଭାଗ ଅତି ପ୍ରଶସ୍ତ, ମଙ୍ଗ ଗୋଳିଆ ଏବଂ ପାଲଗୁଡ଼ିକ ଆୟତାକାର ଜଣାପଡ଼େ । ବୋଇତରେ ମଙ୍ଗୁଆଳ, ନାବିକ ଓ ସୌଦାଗରଆଦିଙ୍କ ସ୍ଥାନ ନିର୍ଦ୍ଦିଷ୍ଟ ହୋଇ ରହିଛି ଏବଂ ପଣ୍ୟଦ୍ରବ୍ୟ ସବୁ ସମ୍ମୁଖରେ ଯତ୍ନର ସହିତ ସଜ୍ଜିତ ହୋଇଥିବାର ଦେଖା-ଯାଉଛି । ଏ ଧରଣର ବୋଇତରେ ଶହ ଶହ ଆରୋହୀ ଅତି ନିରାପଦରେ ସାଗରର ଢେଉକାଟି ଦେଶାନ୍ତର ଯାଇ ପାରୁଥିଲେ । ପରିବ୍ରାଜକ ଫାଇହାନ୍ ଯେଉଁ ପ୍ରକାର ବୋଇତ ଚଢ଼ି ଚୀନ ଫେରିଯାଇଥିବା ବର୍ଣ୍ଣନା କରିଅଛନ୍ତି, ଅଜନ୍ତା ଚିତ୍ରର ବୋଇତ ଠିକ୍ ସେହିଭଳି ଥିବାର ମନେହୁଏ ।

## ରୋମ ସହିତ ବାଣିଜ୍ୟ

ପୂର୍ବ ଏସିଆରେ ଭାରତର ସଂସ୍କୃତି ପ୍ରସାର ପାଇବା ମୂଳରେ ବୌଦ୍ଧଧର୍ମର ପ୍ରେରଣା ରହିଥିଲା । କିନ୍ତୁ ପଶ୍ଚିମ ଏସିଆ ଓ ଇଉରୋପ ଖଣ୍ଡରେ ଭାରତୀୟ ବାଣିଜ୍ୟ ବୃଦ୍ଧି ପାଇବା ମୂଳରେ ଦେଖିବାକୁ ମିଳେ ରୋମ ସାମ୍ରାଜ୍ୟର ବିଳାସିତା । ଖ୍ରୀଷ୍ଟୀୟ ଶତାବ୍ଦୀ ଆରମ୍ଭ ବେଳେ ରୋମ ପ୍ରଜାତନ୍ତ୍ର ଶାସନ ଫିଙ୍ଗି ବିରାଟ ସାମ୍ରାଜ୍ୟରୂପେ ଗଢ଼ା ହେଲା ଓ ସେତେବେଳେ ତାର ସୀମାରେଖା ବ୍ୟାପିଗଲା ସିରିଆ ଏବଂ ମିଶର ଯାଏ । ସାମ୍ରାଜ୍ୟର ବିକାଶ ସହିତ ରୋମାନ

ଜାତିର ଆର୍ଥିକ ସ୍ୱଚ୍ଛଳତା ଓ ବିଳାସ ମାତ୍ରା ବୃଦ୍ଧି ପାଇବା ଅତି ସ୍ୱାଭାବିକ । ଖ୍ରୀ : ପୂ : ୨୭୨ ରେ ଟେରେଣ୍ଟୁମ୍ ନଗର ଅଧିକାର କରିବା ଫଳରେ ରୋମରେ ତାମ୍ରମୁଦ୍ରା ପରିବର୍ତ୍ତିରେ ରୌପ୍ୟମୁଦ୍ରା ଚଳିଲା ଏବଂ ଖ୍ରୀ ପୂ : ୧୪୬ ରେ କାର୍ଥେଜ୍ ଓ କରନ୍ଥ ରାଜ୍ୟର ପତନ ପରେ ସେଠି ସ୍ୱର୍ଣ୍ଣମୁଦ୍ରାର ପ୍ରଚଳନ ଅତିମାତ୍ରାରେ ଦେଖାଗଲା । ଜୁଲିଅସ୍ ସିଜରଙ୍କ ପରେ ଯେତେବେଳେ ରୋମ ସାମ୍ରାଜ୍ୟ ଗଢ଼ାହେଲା, ସେତେବେଳେ ରୋମ ଥିଲା ସମଗ୍ର ପୃଥିବୀରେ ଅଦ୍ୱିତୀୟ ପ୍ରଭାବଶାଳୀ ଓ ଧନଶାଳୀ ଏବଂ ସମୁଦାୟ ଇଉରୋପ ଓ ପଶ୍ଚିମ ଏସିଆ ଖଣ୍ଡ ଥିଲା ରୋମାନ୍ ଜାତିର ଚରଭୂକ୍ତଁ । ରୋମର ଏ ନାହିଁ ନଥିବା ଉନ୍ନତି ଫଳରେ ଭାରତର ନୌବାଣିଜ୍ୟର ଚରମବିକାଶ ସମ୍ଭବହେଲା ଏବଂ କ୍ରମେ ରୋମାନ୍ ଜାତିର ଧନଦୌଲତ ଭାରତକୁ ଟଣାହୋଇ ଆସିଲା । ପ୍ରତିବର୍ଷ ଶତ ଶତ ବୋଇତ ନାନା ବିଳାସ ସାମଗ୍ରୀ ଘେନି ଭାରତୀୟ ଉପକୂଳରୁ ଆଲେକ୍‌ଜାଣ୍ଡ୍ରିଆ ବନ୍ଦର ଯାଏ ଓ ସେଠୁ ପୁଣି ରୋମ ନଗରୀ ଯାଏ ଯାଉଥିଲେ ଏବଂ କଳ୍ପନାତୀତ ସଂଖ୍ୟାରେ ସ୍ୱର୍ଣ୍ଣମୁଦ୍ରା ଘେନି ପୁଣି ଫେରୁଥିଲେ ଭାରତକୁ । ଢାକାର ମସ୍‌ଲିନ୍, କଳିଙ୍ଗର କାର୍ପାସବସ୍ତ୍ର, ସମ୍ବଲପୁରର ହୀରକ, ଦାକ୍ଷିଣାତ୍ୟର ମୁକ୍ତା, ପ୍ରବାଳ ଓ ମୂଲ୍ୟବାନ ପ୍ରସ୍ତର, ବଦଖାର ହସ୍ତୀଦାନ୍ତର କାରୁକାର୍ଯ୍ୟ, ମାଲବାରର ଚନ୍ଦନ ଓ ଶିଶୁକାଠର ବିବିଧ ପଦାର୍ଥ, ଭାରତୀୟ ଜଙ୍ଗଲର ହାତୀ, ସିଂହ, ହରିଣ, ମୟୂର ଓ ନାନାବିଧ ଗାୟିକା ପକ୍ଷୀ, ପୁଣି ନୀଳ, କର୍ପୂର, ଚୂଣା, ଗୁଗ୍‌ଗୁଳ ଏବଂ ବିବିଧ ମସଲା— ଏସବୁ ଥିଲା ରୋମର ବଜାରମାନଙ୍କରେ ଅତି ମୂଲ୍ୟବାନ୍ ପଣ୍ୟ, ଏବଂ ବିଳାସପ୍ରିୟ ରୋମାନ୍ ଜାତି ସେତେବେଳେ ହୀରାଦରରେ କିଣି ନେବାପାଇଁ ପ୍ରସ୍ତୁତ ଥିଲେ ।

ଏବେ ଭାରତର ଉପକୂଳ ଅଞ୍ଚଳରେ ମାଟିତଳୁ ମିଳିଥିବା ରୋମାନ୍ ମୁଦ୍ରା ଗୁଡ଼ିକରୁ ସେକାଳର ରୋମ ଓ ଭାରତ ମଧ୍ୟରେ ଚାଲିଥିବା ନୌବାଣିଜ୍ୟର ପରିଚୟ ମିଳେ । ମାନ୍ଦ୍ରାଜ ସରକାରଙ୍କ ମ୍ୟୁଜିୟମ୍‌ରେ ପ୍ରାୟ ସବୁପ୍ରକାର ରୋମାନ୍ ମୁଦ୍ରା ଯତ୍ନର ସହିତ ରଖାଯାଇଅଛି । ସେଗୁଡ଼ିକ ଯେ ଭାରତୀୟ ନୌବାଣିଜ୍ୟର ଇତିହାସ ନିମନ୍ତେ ଅମୂଲ୍ୟ ଉପାଦାନ ଏଥିରେ ସନ୍ଦେହ ନାହିଁ । ଏହି ମ୍ୟୁଜିୟମ୍‌ରେ ସମ୍ରାଟ୍ ଟାଇବେରିଅସ୍, କାଲିଗୁଲା, କ୍ଲଡ଼ିୟସ୍ ଓ ନେରୋଙ୍କ ନାନାବିଧ ମୁଦ୍ରା ବହୁ ସଂଖ୍ୟାରେ ଦେଖାଯାଏ । ତେଣୁ ଏମାନଙ୍କ ଅମଳରେ ରୋମ ସହିତ ଭାରତର ବାଣିଜ୍ୟ ବିଶେଷ ପରିମାଣରେ ବଢ଼ିଥିବା ମନେ ହୁଏ । କିନ୍ତୁ ଏହା ପରେ ସମ୍ରାଟ୍ ଭେସ୍‌ପାସିଏନ୍ ଓ ଟିଟସ୍‌ଙ୍କ ମୁଦ୍ରାମାନ ଅତି ଅଳ୍ପ ସଂଖ୍ୟାରେ ମିଳେ ଏବଂ ଏମାନଙ୍କ କାଳରେ ବାଣିଜ୍ୟ ହ୍ରାସ ପାଇବାର ମନେ ହୁଏ । ଟିଟସ୍‌ଙ୍କ ପରବର୍ତ୍ତୀ ଯୁଗରେ ଭାରତୀୟ ବାଣିଜ୍ୟର ପ୍ରତିଷ୍ଠା ପୁଣି ଫେରି ଆସିଥିବାର ଆଭାସ ମିଳେ । କାରଣ ଡୋମିଟିଏନ୍, ନେର୍ଭା, ଟ୍ରାଜନ୍ ଓ ହାଡ୍ରିୟାନ୍ ଆଦି ସମ୍ରାଟଙ୍କ ମୁଦ୍ରା ଦକ୍ଷିଣ ଭାରତର ନାନା ସ୍ଥାନରେ ଦେଖାଯାଇଥାଏ । କିନ୍ତୁ ସମ୍ରାଟ୍ ହାଡ୍ରିୟାନ୍‌ଙ୍କ ପରେ ବୋଧହୁଏ ପୁନର୍ବାର ନୌବାଣିଜ୍ୟର ଭଟ୍ଟା ଆରମ୍ଭ ହେଲା ଏବଂ ସେ ସମୟଠୁ ସମ୍ରାଟ୍ କୋମୋଡ଼ଅସ୍‌ଙ୍କ ରାଜତ୍ୱ ଯାଏ ରୋମାନ୍ ମୁଦ୍ରା ଆଉ ଭାରତକୁ ଆସିନଥିବା ବିଶ୍ୱାସ କରାଯାଏ । ଭାରତ ଓ ରୋମ ମଧ୍ୟରେ ଚାଲିଥିବା ନୌବାଣିଜ୍ୟରେ ଏ ଯେଉଁ କୁଆରଭଟ୍ଟା ଦେଖାଯାଏ, ତାର କାରଣ ରୋମର ଇତିହାସରୁ ଅନୁସନ୍ଧାନ କରାଯାଇପାରେ । ରୋମର ସାମୟିକ ଗୃହବିବାଦ ଓ ଅନ୍ତର୍ବିପ୍ଳବ ଯେ ନୌବାଣିଜ୍ୟର ଉଭବୃଦ୍ଧି ପାଇଁ ଅନ୍ତରାୟ ଥିଲା ଏଥିରେ ସନ୍ଦେହ ନାହିଁ । ବହୁ ଯୁଦ୍ଧ, ବିଗ୍ରହ ଓ ଅନ୍ତର୍ବିପ୍ଳବ ସତ୍ତ୍ୱେ ଏବଂ ନାନା ରାଜନୈତିକ ନିୟନ୍ତ୍ରଣ ମଧ୍ୟରେ ଭାରତର

ବାଣିଜ୍ୟ ରୋମରେ ବିଶେଷ ଭାବରେ ବୃଦ୍ଧି ପାଇଥିବାର ଦେଖାଯାଏ । ଭାରତୀୟ ପଣ୍ୟର ଆକର୍ଷଣ ରୋମାନ୍ ନରନାରୀଙ୍କ ପ୍ରାଣରେ ମଦିରା ତୁଲ୍ୟ ତୃଷା ବଢ଼ାଉଥିଲା ଏବଂ ତାହା ଏଡ଼ିଦେବାର ଶକ୍ତି ସେମାନଙ୍କର ନ ଥିଲା । ଫଳରେ କ୍ରମେ ବିଭବଶାଳୀ ରୋମର ଆର୍ଥିକ ଭିତ୍ତି ଦୁର୍ବଳ ହୋଇ ପଡ଼ିଲା ଏବଂ ସେଠାର ଚିନ୍ତାଶୀଳ ବ୍ୟକ୍ତିମାନେ ଭାରତୀୟ ନୌବାଣିଜ୍ୟକୁ ଜାତୀୟ ଦୁର୍ବିପାକ ରୂପେ ଗଣନା କଲେ । ଐତିହାସିକ ପ୍ଲିନି ପ୍ରଥମ ଶତାବ୍ଦୀରେ ଲେଖି ଅଛନ୍ତି, "ଭାରତୀୟମାନେ ପ୍ରତିବର୍ଷ ୫୫୦,୦୦୦,୦୦୦ ସିଷ୍ଟାର୍ସ (=୨୨,୦୦୦,୦୦୦ ଡୋଲର)ରୁ ଅଧିକ ଅର୍ଥ ରୋମ ସାମ୍ରାଜ୍ୟରୁ ବୋହି ନେଉ ଅଛନ୍ତି ଏବଂ ରୋମକୁ ଯେଉଁ ପଣ୍ୟ ଦେଉଛନ୍ତି ତାହା ପ୍ରକୃତ ମୂଲ୍ୟଠାରୁ ଶହେଗୁଣରୁ ଅଧିକ ।" ସମ୍ରାଟ୍ ଟାଇବେରିୟସ୍ ରୋମର ସିନେଟ୍‌କୁ ଲେଖିଥିଲେ—"ଅତୀତ ରୋମର ସରଳ ଓ ନିରାଡ଼ମ୍ବର ଜୀବନ ଫେରାଇ ଆଣିବା କିପରି ? କିପରି ଆମେ ରୋମବାସୀଙ୍କ ବିଳାସ-ପୋଷାକ ସ୍ପୃହା କମାଇ ପାରିବା ? ମଣି, ମୁକ୍ତାକାଚ, ପଥର ପ୍ରତି ଆମ ନାରୀ ଜାତିର ଯେଉଁ ଲାଳସା ରହୁଛି ଏବଂ ଆଡ଼ମ୍ବର ଓ ବିଳାସିତା ପାଇଁ ସେମାନଙ୍କର ଯେଉଁ ବୃଥା ଅଭିମାନ ଏବଂ ପାଗଳାମି ବଢ଼ି ଯାଉଛି ତାହା ଫଳରେ ତୁଚ୍ଛ ପଦାର୍ଥ ବଦଳରେ ଅଜସ୍ର ଅର୍ଥ ବିଦେଶୀୟଙ୍କ ପାଖକୁ ଏବଂ ସମୟରେ ରୋମର ଶତ୍ରୁରାଜ୍ୟକୁ ମଧ୍ୟ ବୁହାହୋଇ ଯାଉଛି ।" ଆଶ୍ଚର୍ଯ୍ୟର କଥା ଟାଇବେରିୟସ୍‌ଙ୍କ ପରେ ରୋମ ସମ୍ରାଟଙ୍କ ଏ ଚେତନା ଓ ସଂଯତ ଚିନ୍ତା ଉଭେଇଗଲା । କାଲିଗୁଲା, ଭିଟେଲିଅସ୍, ଡୋମିଟିଏନ୍ ଆଦି ସମ୍ରାଟ୍ ବିଳାସର ଦୋଳାରେ ଜୀବନ କଟାଇ ଅକାତରରେ ଲକ୍ଷ ଲକ୍ଷ ମୁଦ୍ରା ଢାଳିଦେଲେ । ସମ୍ରାଟ୍ ନେରୋଙ୍କ ଅପବ୍ୟୟର ବିବରଣ ଏବେ ଆରବ ଉପନ୍ୟାସଠାରୁ ବଳି ଆଶ୍ଚର୍ଯ୍ୟ ବୋଧ-ହୁଏ । ନେରୋଙ୍କ ଅମଳରେ ଚରିତ୍ରହୀନତା ଓ ବିଳାସିତାର ଚିହ୍ନକୁ

ନୀତିବାଦୀ ସିନେକା ପରିହାସରସରେ ଅଙ୍କି ଯାଇ ଅଛନ୍ତି । ତାଙ୍କ ଚେତାବନୀ ଉଚ୍ଛୃଙ୍ଖଳ ରୋମକୁ ସ୍ୱର୍ଣ୍ଣଶୃଙ୍ଖଳରେ ବାନ୍ଧି ସଂଯତ କରିବା ଚେଷ୍ଟା ଭଳି ମନେହୁଏ । ସେ ଯାହାହେଉ ତାଙ୍କର ଆକୁଳ ଭାଷା ରୋମର ବିବେକହୀନ ବିଳାସିତାରେ ମିଳେଇଗଲା । ସମ୍ରାଟ୍ ଏଲଗାବେଲସଙ୍କ ବେଳେ (୨୧୮ ଖ୍ରୀ:ରେ) ରୋମ ସାମ୍ରାଜ୍ୟରେ ସ୍ୱର୍ଣ୍ଣ ମୁଦ୍ରାର ଅଭାବ ହେଲା ଏବଂ ସେତେବେଳେ ଦୀନାରସବୁ ପୁରାପୁରି ତମ୍ବା ପାଲଟି ଯାଇଥିଲା । ତୃତୀୟ ଶତାବ୍ଦୀର ଶେଷ ବେଳକୁ ରୋମନଗରୀ ଶ୍ରୀହୀନା ହେଲା ଏବଂ ମଞ୍ଜୁଳ କନସ୍ତାନ୍ତିନୋପ୍ଲି ହେଲା ସାମ୍ରାଜ୍ୟର ରାଜଧାନୀ । ରୋମର ପ୍ରତିକୂଳ ବାଣିଜ୍ୟନୀତି ଏବଂ ଅର୍ଥ ସଂକଟ ତାହାର ପତନ ପାଇଁ ବିଶେଷରୂପେ ଦାୟୀ । ରୋମ ସାମ୍ରାଜ୍ୟର ପତନ ପରେ ଭାରତରେ ସମୃଦ୍ଧଶାଳୀ ଗୁପ୍ତ ସାମ୍ରାଜ୍ୟ ମୁଣ୍ଡ ଟେକି ଉଠିଲା ଏବଂ ସେତେବେଳେ ଧର୍ମ, ଦର୍ଶନ, କଳା, ସ୍ଥାପତ୍ୟରେ ଭାରତ ଶ୍ରେଷ୍ଠ ସ୍ଥାନ ଅଧିକାର କଲା । ଏ ସବୁର ପରିବର୍ତ୍ତନ ମୂଳରେ ଭାରତୀୟ ନୌ-ବାଣିଜ୍ୟର ପ୍ରଭାବ ନିଶ୍ଚିତରୂପେ ଦେଖାଯାଏ । ରୋମ ଭାଙ୍ଗି ଭାରତ ତୋଳିବାରେ ଅନୁକୂଳ ଅବସ୍ଥା ପରିବେଷଣ କରିଥିଲେ ଭାରତର ନାବିକ ଓ ବଣିକଦଳ ।

## କଳିଙ୍ଗ ଓ ଆନ୍ଧ୍ରଦେଶ

ଭାରତର ପୂର୍ବଉପକୂଳ ଗଙ୍ଗାଠାରୁ କାବେରୀ ଯାଏ ବହୁ ସୁନାବ୍ୟା ନଦୀର ମୁହାଣ ଦ୍ୱାରା ଗଠିତ ଓ ଦନ୍ତୁରିତ । ଏ ଉପକୂଳର ଭୌଗୋଳିକ ସ୍ଥିତି ନୌବାଣିଜ୍ୟ ନିମନ୍ତେ ଯେ ବିଶେଷ ଅନୁକୂଳ ଏଥିରେ ସନ୍ଦେହ ନାହିଁ । ସମ୍ମୁଖରେ ବ୍ରହ୍ମଦେଶ, ସିଂହଳ, ଚମ୍ପା, ସୁବର୍ଣ୍ଣ ଦ୍ୱୀପ ଆଦି ଦେଶ ସାଗରର ସେପାରିରେ ବହୁତ ଆକର୍ଷଣ ଦେଇ ଅବସ୍ଥିତ । ତେଣୁ ଏ ଉପକୂଳରେ ଥିବା କଳିଙ୍ଗ ଓ

ଆନ୍ଧ୍ରରାଜ୍ୟ ବହୁକାଳରୁ ନୌଚାଳନା ଓ ନୌବାଣିଜ୍ୟରେ ପ୍ରସିଦ୍ଧି ଲାଭ କରିପାରିଛି । ବ୍ରହ୍ମଦେଶ, ସିଂହଳ ଏବଂ ପୂର୍ବ ଦ୍ୱୀପପୁଞ୍ଜ କଳିଙ୍ଗ ଅଧିବାସୀଙ୍କ ଉପନିବେଶରୂପେ ଭାରତୀୟ ସଂସ୍କୃତିର ଆଲୋକ ପାଇ ପାରିଥିବା ଜଣାପଡ଼େ । ସେଗୁ ଅଞ୍ଚଳର ପ୍ରାଚୀନ ନାମ ଥିଲା ଉତ୍କ୍ଷ ଓ ଶ୍ରୀକ୍ଷେତ୍ର ଏବଂ ଏ ନାମ ଦୁଇଟି ଉଡ୍ର ଓ ଶ୍ରୀକ୍ଷେତ୍ର ନାମର ରୂପାନ୍ତର ଭିନ୍ନ ଆଉ କିଛି ନୁହେଁ । ପୁଣି ବ୍ରହ୍ମଦେଶର ପଶ୍ଚିମଖଣ୍ଡ ଉତ୍କଳ ଏବଂ ଦକ୍ଷିଣାଞ୍ଚଳ ତେଲିଙ୍ଗ ନାମରେ ଆଗେ ପରିଚିତ ଥିଲା । ଏ ନାମମାନ ଓଡ଼ ଉତ୍କଳ ଓ କଳିଙ୍ଗ (ତ୍ରିକଳିଙ୍ଗ) ରାଜ୍ୟର ପରିଚାୟକ ଏଥିରେ ସନ୍ଦେହ ନାହିଁ । ପ୍ରାଚୀନ ଉଡ୍ର, ଉତ୍କଳ ଓ କଳିଙ୍ଗର ଲୋକେ ବ୍ରହ୍ମଦେଶର ବିଭିନ୍ନ ଅଞ୍ଚଳରେ ବସତି କରି, ସେଗୁଡ଼ିକୁ ନିଜ ନିଜର ଜନ୍ମଭୂମିର ନାମ ପ୍ରଦାନ କରିଥିବା ଏଥିରୁ ସୂଚନା ମିଳେ । ସୁମାତ୍ରା ଓ ଯବ ଆଦି ଦ୍ୱୀପରେ କଳିଙ୍ଗର କୋଡ଼ିଏ ହଜାର ପରିବାର ସବା ପହିଲେ ଯାଇ ବସତି କରିଥିବା ପରଂପରାରୁ ଜଣାଯାଏ । ଏ ପରଂପରାର, ସତ୍ୟତା ଯାହାହେଉ, ପୂର୍ବଦ୍ୱୀପପୁଞ୍ଜ ଯେ ଆଗେ ଚୀନା ନାବିକଙ୍କ ମଧ୍ୟରେ କଙ୍ଗ୍ ନାମରେ ପରିଚିତ ଥିଲା, ଏହା କଳିଙ୍ଗର ଆଦି ଉପନିବେଶର ସୂଚନା । ବୌଦ୍ଧଧର୍ମର ଅଭ୍ୟୁଦୟ ବେଳେ କଳିଙ୍ଗ ଉପକୂଳର ତାମ୍ରଲିପ୍ତି, ପଲ୍ୱର, ଚେଲିତାଲୋ ଆଦି ପ୍ରସିଦ୍ଧ ବନ୍ଦର ଭାରତୀୟ ସଂସ୍କୃତି ବିସ୍ତାରରେ ବିଶେଷ ସାହାଯ୍ୟ କରିଥିଲେ । ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ତାମ୍ରଲିପ୍ତି ବନ୍ଦରଠାରୁ ମହେନ୍ଦ୍ର ଓ ସଂଘମିତ୍ରା ବୋଧି ଶାଖାସେନି ସିଂହଳକୁ ଧର୍ମବିଜୟ ପାଇଁ ଅଭିଯାନ କରିଥିବା କଥା ପୂର୍ବେ ବର୍ଣ୍ଣିତ ହୋଇଛି । ଖ୍ରୀଷ୍ଟୀୟ ତୃତୀୟଶତାବ୍ଦୀ ବେଳେ ସିଂହଳ ପ୍ରତି ଭାରତର ଅନ୍ୟ ଏକ ମହାନ୍ ଦାନର ପୁଣି ସାକ୍ଷୀ ଥିଲା ଏଇ ତାମ୍ରଲିପ୍ତି । କଳିଙ୍ଗରାଜ ଗୁହଶିବଙ୍କ ଦୁହିତା ହେମମାଳା ଓ ଜାମାତା ଦନ୍ତକୁମାର କଳିଙ୍ଗରେ ବହୁକାଳରୁ ପୂଜା

ପାଉଥିବା ବୁଦ୍ଧଙ୍କ ଦନ୍ତଟିକୁ ଘେନି ଏଇଠାରେ ବୋଇତ ଚଢ଼ି ଯାଇଥିଲେ ସିଂହଳକୁ । ସେଦିନଠୁ ଆଜିଯାଏ ବୁଦ୍ଧଙ୍କ ଦନ୍ତ ଧାତୁ ହୋଇଛି ସିଂହଳର ଜାତୀୟ ଗୌରବ । କଳିଙ୍ଗ ଉପକୂଳର ଅନ୍ୟ ଏକ ବଡ଼ ବନ୍ଦର ପଲୁର ବଂଶଧାରା ନଦୀ ମୁହାଣ ପାଖରେ ଅବସ୍ଥିତ ଥିଲା । ଫରାସୀ ପଣ୍ଡିତ ସିଲଭାଁଲେଭି କହନ୍ତି, ଏ ବନ୍ଦରର ଅଗକାଳର ନାମ ଥିଲା ଦନ୍ତପୁର ଏବଂ ଏଠି ବୁଦ୍ଧଙ୍କ ଦନ୍ତଧାତୁ ସିଂହଳକୁ ନିଆ ହେବାଯାଏ ପୂଜା ପାଉଥିଲା । ଗ୍ରୀକ୍ ଭୌଗୋଳିକ ଟଲେମି ପଲୁରକୁ କେନ୍ଦ୍ର କରି ତାଙ୍କ ଭୌଗୋଳିକ ମାନଚିତ୍ର ଟାଣିଥିଲେ ଏବଂ ତାଙ୍କ ପୁସ୍ତକରୁ ଜଣାପଡ଼େ ଯେ ଏହା ସେ କାଳରେ ଭାରତର ନୌବାଣିଜ୍ୟ କ୍ଷେତ୍ରରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ପଲୁର ପାଖରେ ଥିବା ଗଞ୍ଜାମ ବନ୍ଦରରୁ ବୋଇତ ସବୁ ବାହାରି ସୁବର୍ଣ୍ଣଦ୍ୱୀପକୁ ଯାତ୍ରା କରୁଥିବା ମଧ୍ୟ ଟଲେମି ଲେଖିଛନ୍ତି । କଳିଙ୍ଗର ଚେଲିତାଲୋ ବନ୍ଦର ଅବସ୍ଥିତ ଥିଲା ତାମ୍ରଲିପ୍ତି ଓ ପଲୁରର ମଧ୍ୟବର୍ତ୍ତୀ ସ୍ଥାନରେ, ସମ୍ଭବତଃ ଚିଲିକାହ୍ରଦର ମୁହାଣ ନିକଟରେ । ଏ ବନ୍ଦରରୁ କଳିଙ୍ଗର ସାଧବମାନେ ବୋଇତ ନେଇ ବହୁ ଦୂର ଦେଶକୁ ଯାତ୍ରା କରୁଥିବା ବିଷୟ ଚୀନ ପରିବ୍ରାଜକ ହୁଏନସାଂ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଲେଖିଛନ୍ତି । ଚେଳିତୋଲା ଉପକୂଳରେ ତାରକା ଖଚିତ ଆକାଶତଳେ ଦଣ୍ଡାୟମାନ ହୋଇ ହୁଏନସାଂ ଉର୍ମିଳ ସମୁଦ୍ରରେ ଦୃଷ୍ଟି ପକାଇଥିଲେ ଏବଂ ସିଂହଳରେ ଥିବା ବୁଦ୍ଧଙ୍କ ଦନ୍ତ-ଧାତୁ ଦାଗ୍‌ବଳୟକୁ ଆଲୋକିତ କରୁଥିବା ଅନୁଭବ କରିଥିଲେ । ସିଂହଳ ସହିତ ଚେଲିତାଲୋର ନୌଚଳାଚଳର ସମ୍ପର୍କ ଦେଖି ଧର୍ମପ୍ରାଣ ହୁଏନ୍‌ସାଂ ତେତେବେଳେ ଦନ୍ତଧାତୁର ଭାବନାରେ ଉଦ୍‌ଗତ ହୋଇ ପଡ଼ିଥିବା ଅତି ସ୍ୱାଭାବିକ । ଅଷ୍ଟମ ଶତାବ୍ଦୀ ଶେଷବେଳେ ଉଡ୍ର ଦେଶର ରାଜା ଶୁଭକର ସିଂହ ଚୀନ ସମ୍ରାଟ୍ ଟି-ସଂଙ୍କ ଦରବାରକୁ

ପ୍ରାଜ୍ଞ ନାମକ ଏକ ବୌଦ୍ଧ ପଣ୍ଡିତଙ୍କୁ ଧର୍ମଦୂତରୂପେ ପଠାଇଥିଲେ । ପ୍ରାଜ୍ଞ ଉକ୍ତ ରଜାଙ୍କ ହାତଲେଖା ଗଣ୍ଡବ୍ୟୂହ ଗ୍ରନ୍ଥ ଓ ବହୁତ ପୂର୍ଣ୍ଣ ଏକ ପଦ ନେଇ ଚୀନ ଯାତ୍ରା କରିଥିଲେ ଓ ସମ୍ରାଟ୍ ଟି-ସଂଙ୍କ ଦ୍ୱାରା ବିଶେଷ ସମ୍ମାନିତ ହୋଇଥିଲେ । ଉତ୍କଳଦେଶ ସହିତ ଚୀନର ସାଂସ୍କୃତିକ ଓ ନୌ ସଂପର୍କ ଅଷ୍ଟମ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ମଧ୍ୟ ପ୍ରତିଷ୍ଠିତ ଥିବା ଏଥିରୁ ସ୍ପଷ୍ଟ ଜଣାପଡ଼େ ।

ଉତ୍କଳ ଓ କଳିଙ୍ଗ ଉପକୂଳ ପରି ଆନ୍ଧ୍ର ଉପକୂଳ ଭାରତର ନୌବାଣିଜ୍ୟ ଏବଂ ସଂସ୍କୃତି ପ୍ରସାର ନିମନ୍ତେ ବହୁକାଳରୁ ପ୍ରସିଦ୍ଧି ଲାଭ କରିଥିଲା । ଉତ୍ତରରେ ବିଶାଖାପାଟଣାଠାରୁ ଦକ୍ଷିଣରେ ନାଗାପଟ୍ଟନମ୍ ଯାଏ ବହୁସଂଖ୍ୟକ ବନ୍ଦର ଏ ଅଞ୍ଚଳରେ ବିକାଶ ଲାଭ କରିଥିଲେ ଓ ଏସିଆ, ୟୁରୋପ ତଥା ଆଫ୍ରିକାର ଉପକୂଳ ସହିତ ବାଣିଜ୍ୟ କାରବାର ଚଳାଉଥିଲେ । ପ୍ଲିନି, ପେରିପ୍ଲସ୍, ଟଲେମି ଆଦି ବିଦେଶୀ ଲେଖକ ଏଠାର ନୌବାଣିଜ୍ୟ ଓ ଧନ ଦୌଲତରେ ବିସ୍ମିତ ହୋଇଥିବା କଥା ସେମାନଙ୍କ ଲେଖାଗୁଡ଼ିକରୁ ଜଣାପଡ଼େ । ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ସାତବାହାନ ବଂଶ ରାଜତ୍ୱ କରୁଥିବାବେଳେ ରୋମ ସାମ୍ରାଜ୍ୟରେ ଆନ୍ଧ୍ର ବଣିକଙ୍କ ବାଣିଜ୍ୟ ପ୍ରସାର ଲାଭ କରିଥିଲା । ଯଜ୍ଞଶ୍ରୀ ସାତକର୍ଣ୍ଣୀଙ୍କ ମୁଦ୍ରାରେ ଅଙ୍କିତ ହୋଇଥିବା ବୋଇତ, ଶଙ୍ଖ ଓ ମାଛ ଆଦି ଚିହ୍ନ ତାଙ୍କ ଦେଶରେ ନୌବାଣିଜ୍ୟର ଯଥେଷ୍ଟ ସୂଚନା ଦିଏ । ବନ୍ଦୁକୋଣ୍ଡ, ନେଲୋର, କୁଦାପଥା ଏବଂ ଏରିକାମେଡ଼ୁ ଭୂଖୋଦନରୁ ମିଳିଥିବା ଅସଂଖ୍ୟ ରୋମାନ୍ ମୁଦ୍ରା ରୋମ ସହିତ ଚାଲିଥିବା ଆନ୍ଧ୍ର ନୌବାଣିଜ୍ୟର ନିଶ୍ଚିତ ପ୍ରମାଣ । ଚୀନ ସାମ୍ରାଜ୍ୟ ସହିତ ମଧ୍ୟ ଆନ୍ଧ୍ର ଦେଶର ବାଣିଜ୍ୟ ଅତ୍ୟଧିକ ଭାବରେ ପ୍ରତିଷ୍ଠିତ ଥିଲା ଏବଂ ବହୁସଂଖ୍ୟକ ଚୀନା ବୋଇତ ଭାରତୀୟ ଉପକୂଳକୁ



ଆନ୍ଧ୍ର ଦେଶର ରାଜା ଯଜ୍ଞଶ୍ରୀ ସାତକର୍ଣ୍ଣୀଙ୍କ
ମୁଦ୍ରାରେ ଅଙ୍କିତ ହୋଇଥିବା ବୋଇତ ଚିହ୍ନ
( ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକ )

ବାଣିଜ୍ୟ ପାଇଁ ଆସୁଥିବା ଚୀନ ଦେଶର ପ୍ରାଚୀନ ଲେଖାମାନଙ୍କରୁ ଜଣାପଡ଼େ । କୃଷ୍ଣାନଦୀର ମୁହାଣରେ ଏବେ ଚୀନ ନାମକ ଯେଉଁ ଛୋଟ ଗାଁ ଖଣ୍ଡିଏ ଅଛି ତାହା ଅତୀତକାଳର ଚୀନବଣିକମାନଙ୍କର ଏକ ଧନଶାଳୀ ଉପନିବେଶ ଥିବା ମନେହୁଏ ଏବଂ ଯଜ୍ଞଶ୍ରୀ ସାତାକର୍ଣ୍ଣୀଙ୍କ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ଏକ ଲିପି ଏଠି ଏବେ ମିଳିପାରିଛି । ତୃତୀୟ ଶତାବ୍ଦୀରୁ ଇକ୍ଷ୍ୱାକୁ, ପଲ୍ଲବ ଓ ସାଲଙ୍କାୟନ ଆଦି ରାଜବଂଶ ପୂର୍ବ ଉପକୂଳରେ କ୍ଷମତାଶାଳୀ ହୋଇ ଉଠିଲେ ଏବଂ ସେ ସମୟଠୁ ବ୍ରହ୍ମଦେଶ, ଚଂପା, କଂବୋଜ ଓ ପୂର୍ବଦ୍ୱୀପପୁଞ୍ଜ ସହିତ ଆନ୍ଧ୍ର ଦେଶର ସାଂସ୍କୃତିକ ଓ ବାଣିଜ୍ୟ ସମ୍ପର୍କ ବିଶେଷ ଭାବରେ ଚାଲିଲା । ଏ ସମ୍ପର୍କ ଫଳରେ ପଲ୍ଲବଙ୍କ କାଳର ବ୍ରାହ୍ମୀ ଅକ୍ଷର ଦକ୍ଷିଣ ପୂର୍ବ ଏସିଆର ଲିପି ରୂପେ ଗୃହୀତ ହେଲା ଏବଂ ସଂସ୍କୃତ ଭାଷା କ୍ରମେ ବିକାଶ ପାଇଲା ସେ ଅଞ୍ଚଳର ବିଭିନ୍ନ ରାଜ୍ୟର ରାଜଭାଷାରୂପେ ।

କଳିଙ୍ଗ ଓ ଆନ୍ଧ୍ର ଭିତରେ ମଧ୍ୟରେ ପୂର୍ବ ଏସିଆରେ ବାଣିଜ୍ୟ ଓ ଉପନିବେଶ ସ୍ଥାପନ ନିମନ୍ତେ ପ୍ରତିଯୋଗିତା ଚାଲିଥିବା ଅନୁମାନ କରାଯାଏ । ଖ୍ରୀଷ୍ଟୀୟ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ଗଙ୍ଗ ଏବଂ ଶୈଳୋଦ୍‌ଭବ ରାଜବଂଶ କଳିଙ୍ଗ ଏବଂ କଙ୍ଗୋଦ ଅଞ୍ଚଳରେ କ୍ଷମତାଶାଳୀ ହୋଇ ମଥା ଟେକି ଉଠିଲେ ଏବଂ ସେମାନଙ୍କ ପ୍ରଭାବ ଦକ୍ଷିଣ ପୂର୍ବ ଏସିଆରେ କ୍ରମେ ବଢ଼ିଗଲା । ଏହା ଫଳରେ ସୁମାତ୍ରା ଏବଂ ମାଳୟ ଅଞ୍ଚଳରେ ସୁବିଖ୍ୟାତ ଶ୍ରୀବିଜୟ ସାମ୍ରାଜ୍ୟ ଗଢ଼ିଉଠିଲା ଓ କ୍ରମେ ସମଗ୍ର ଯବଦ୍ୱୀପ ଏ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଶ୍ରୀବିଜୟର ଶୈଳେନ୍ଦ୍ର ରାଜବଂଶ, କଂଗୋଦର ଶୈଳୋଦ୍‌ଭବ ରାଜବଂଶରୁ ଉଦ୍‌ଭବ ହୋଇଥିବା ଐତିହାସିକମାନେ ବିଶ୍ୱାସ କରନ୍ତି । ଶୈଳେନ୍ଦ୍ର ରାଜତ୍ୱକାଳକୁ ଦକ୍ଷିଣପୂର୍ବ ଏସିଆର 'ସ୍ୱର୍ଣ୍ଣ ଯୁଗ ବୋଲି କୁହାଯାଏ ଏବଂ

ଯବଦ୍ୱୀପର ବରୋବୁଦୁର୍ ଓ କଲସାନ୍‌ଠାରେ ଥିବା ବୌଦ୍ଧମନ୍ଦିରମାନ ଏ ରାଜବଂଶର ଅମର କୀର୍ତ୍ତିରୂପେ ରହିଛି । ବରୋବୁଦୁର ମନ୍ଦିରରେ ନାନାପ୍ରକାର ବୋଇତ ଛବି ଅଭପଟ୍ଟରେ ଖୋଦିତ ହୋଇଛି ଏବଂ ସେଗୁଡ଼ିକରୁ ସେ କାଳର ବୋଇତ ନିର୍ମାଣ ପ୍ରଣାଳୀର ବହୁତ ସୂଚନା ମିଳିଥାଏ । ସେତେବେଳେ ବୋଇତର ନିମ୍ନ ଭାଗ ବଡ଼ ବଡ଼ କାଠଗଡ଼ ଦ୍ୱାରା ଶକ୍ତରୂପେ ତିଆରି ହୋଇଥିଲା ଓ ତେଣୁ ସମୁଦ୍ରର ଆନ୍ଦୋଳନରେ ତାହା କ୍ଷତବିକ୍ଷତ ହେବାର ଆଉ ଭୟ ନଥିଲା । ବୋଇତର ମଧ୍ୟଭାଗରେ ଯାତ୍ରୀମାନେ ପଣ୍ୟ ଦ୍ରବ୍ୟ ଘେନି ବସୁଥିଲେ ଏବଂ ଏହି ଅଂଶ ଟିକ୍‌କଣ କାଠପଟା ଦ୍ୱାରା ଦ୍ୱିତଳ ପ୍ରାସାଦ ଭଳି ତିଆରି ହୋଇଥିଲା । ଏ ଧରଣର ବୋଇତ ଗୁରୁଭାର ହେବାରୁ ତାର ଗୁରୁତା କମାଇବାପାଇଁ ଉପରେ ଅଣ୍ଟାଳ ସବୁ ଛଣ ଆକାରରେ ଅତି କୌଶଳରେ ସଜା ହୋଇଥିଲା ଏବଂ ଏଗୁଡ଼ିକ ବୋଇତ ସୀମାରେଖାଠୁ ବାହାରକୁ ଲମ୍ବି ଯାଇଥିଲା । ମାସ୍ତୁଲଗୁଡ଼ିକ କେତେକ ଲମ୍ବ ଭାବରେ ଓ କେତେକ ବକ୍ର ଆକାରରେ ନିର୍ମିତ ହୋଇଥିଲା ଓ ଅଣ୍ଟାଳମାନ ପବନରେ ଫୁଲି ଉଠିବାବେଳେ ଏଗୁଡ଼ିକ ବୋଇତକୁ ସମତୁଲ ରଖିପାରୁଥିଲା । ଖ୍ରୀଷ୍ଟୀୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ଭାରତର ପୂର୍ବଉପକୂଳ ଅଞ୍ଚଳରେ ଏ ଧରଣର ବୋଇତ ବହୁ-ସଂଖ୍ୟାରେ ନିର୍ମାଣ ହେଉଥିଲା ବୋଲି ମନେହୁଏ । ଅଜନ୍ତାରେ ଅଙ୍କିତ ନୌଶିଳ୍ପ ଅପେକ୍ଷା ବୋରୋବୁଦୁର ବୋଇତ ଅଧିକତର ଉନ୍ନତ ଓ ଜଟିଳ ପ୍ରଣାଳୀରେ ଗଠିତ ହୋଇଥିବା ସ୍ପଷ୍ଟ ଜଣାପଡ଼େ ।

ଦଶମ ଶତାବ୍ଦୀର ଶେଷବେଳକୁ ଦକ୍ଷିଣରେ ଚୋଳବଂଶର ଅଭ୍ୟୁତ୍ଥାନ ହେବାରୁ କଳିଙ୍ଗର ନୌବାଣିଜ୍ୟ ହ୍ରାସ ପାଇଲା । ରାଜରାଜଚୋଳ ( ଖ୍ରୀ: ୯୮୫ ରୁ ୧୦୧୪ ) କଳିଙ୍ଗର ଗଙ୍ଗ ରାଜାଙ୍କୁ

ପରାସ୍ତ କରି ୧୨ହଜାର ଦ୍ୱୀପ ବଳପୂର୍ବକ ଛଡ଼ାଇ ନେଇଥିବା ଚୋଳ ଅଭିଲେଖମାନଙ୍କରୁ ଜଣାଯାଏ । ରାଜରାଜଙ୍କ ପୁତ୍ର ରାଜେନ୍ଦ୍ର ଚୋଳ ( ଖ୍ରୀ : ୧୦୧୪—୧୦୪୪ ) ଉତ୍ତର ଓ ଦକ୍ଷିଣଭାରତ ଅଞ୍ଚଳ ମଧ୍ୟ ଜୟ କଲେ ଏବଂ ଏହାଙ୍କ ରାଜତ୍ୱରେ ଶ୍ରୀବିଜୟ ଚୋଳ ସାମ୍ରାଜ୍ୟର ଅନ୍ତର୍ଗତ ହୋଇଥିଲା । କିନ୍ତୁ ଚୋଳ ସାମ୍ରାଜ୍ୟ ପ୍ରତିଷ୍ଠିତ ଥିଲା ପୁରାପୁରି ସାମରିକ ଭିତ୍ତିରେ ଏବଂ ରାଜେନ୍ଦ୍ର ଚୋଳଙ୍କ ପରେ ଏ ଭିତ୍ତି ଦୁର୍ବଳ ହୋଇ ପଡ଼ିବାରୁ ଚୋଳଙ୍କ କ୍ଷମତାର ଅବସାନ ଘଟିଲା । ସେତେବେଳେ ଭାରତ ମହାସାଗରରେ ଆରବ ବଣିକ ଓ ନୌଚାଳକଙ୍କ ପ୍ରତିପତ୍ତି ବିଶେଷ ଭାବରେ ବଢ଼ିଯାଇଥିଲା ଏବଂ କ୍ରମେ ଭାରତର ସମୁଦ୍ର ବାଣିଜ୍ୟ ଏହି ଦୁର୍ଦ୍ଦାନ୍ତ ଆରବ ଜାତିର ମୁଷ୍ଟିଗତ ହେଲା । ଭାରତମହାସାଗରରେ ମୁସଲମାନ ଶକ୍ତି ଦୃଢ଼ଭାବରେ ପ୍ରତିଷ୍ଠିତ ହେଲେ ସୁଦ୍ଧା ଆନ୍ଧ୍ରଙ୍କର ବାଣିଜ୍ୟପଟୁତା ବହୁକାଳଯାଏ ଅକ୍ଷୁଣ୍ଣ ରହିଥିଲା । ଫରାସୀ ପରିବ୍ରାଜକ ତାଭର୍ଣ୍ଣିଅର୍ ଆନ୍ଧ୍ର ବଣିକଙ୍କୁ ପ୍ରଶଂସା ନ କରି ରହିପାରି ନାହାନ୍ତି । ତାଭର୍ଣ୍ଣିଅର୍ ମୋଗଲ ରାଜତ୍ୱବେଳେ ଭାରତକୁ ଆସିଥିଲେ ଓ ତାଙ୍କ ସମୟରେ ମସୁଲିପଟ୍ଟମ୍ ପୂର୍ବଉପକୂଳର ସବୁଠୁଁ ବଡ଼ ବନ୍ଦର ଥିବା ମନେହୁଏ । ଏହି ବନ୍ଦରରୁ ଏକ ଦିଗରେ ବର୍ମା, ସୁମାତ୍ରା, ଚୀନ ଓ ଫିଲିପାଇନ ଆଡ଼କୁ ଏବଂ ଅନ୍ୟ ଦିଗରେ ମକ୍କା, ହରମଜ୍ ଓ ମାଡ଼ାଗାସ୍କର ଆଦି ସ୍ଥାନକୁ ବୋଇତମାନ ଚାଳିତ ହେଉଥିବା ତାଭର୍ଣ୍ଣିଅର୍ ଲେଖି ଯାଇ-ଅଛନ୍ତି । ମସୁଲିପଟ୍ଟମ୍‌ର କାର୍ପାସ ବସ୍ତ୍ର ଓ ଛିଟ କନା ସେତେବେଳେ ପୃଥିବୀର ନାନା ସ୍ଥାନରେ ଆଦୃତ ହେଉଥିଲା ଏବଂ ଏ ସବୁ ୟୁରୋପର ବଜାରମାନଙ୍କରେ ଅତି ଚଢ଼ା ଦରରେ ବିକ୍ରି ହେଉଥିଲା ।

## ଆରବ ଜାତର ନୌ ପ୍ରଭାବ

ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ଏସିଆର ପଶ୍ଚିମ ଅଞ୍ଚଳରେ ମୁସଲମାନ ପ୍ରଭାବ ଏବଂ ପୂର୍ବାଞ୍ଚଳରେ ଚୀନା ଜାତଙ୍କ ପ୍ରଭୁତ୍ୱ ବିଶେଷଭାବରେ ଦେଖାଗଲା । ମୁସଲମାନମାନେ ଖଲିଫାଙ୍କ ନେତୃତ୍ୱରେ ସ୍ପେନଠାରୁ ସିନ୍ଧୁ ନଦୀର ମୁହାଣଯାଏ ବିଶାଳ ସାମ୍ରାଜ୍ୟ ଗଢ଼ିବାବେଳେ ତେଣେ ଟାଙ୍ଗ୍ ବଂଶର ରାଜାମାନେ ଚୀନର ସମୁଦାୟ ଅଞ୍ଚଳ ଏକ କରି ଆଉ ଗୋଟିଏ ବଡ଼ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ଏ ଦୁଇଟି ସାମ୍ରାଜ୍ୟ ସୃଷ୍ଟିହେବା ହେତୁ ଭାରତ ମହା-ସାଗରରେ ବହୁ ପରିମାଣରେ ବାଣିଜ୍ୟ ବଢ଼ିଗଲା ଏବଂ ଆରବଠାରୁ ଚୀନଯାଏ ଅସଂଖ୍ୟ ବୋଇତ ଗୁଲିଲା । ଆବାସ୍ ବଂଶୀୟ ଖଲିଫା-ମାନେ ନୌଗୁଳନାର ବିକାଶ କରିବାପାଇଁ ବଡ଼ ଆଗ୍ରହୀ ଥିଲେ ଏବଂ ବାଣିଜ୍ୟର ଉନ୍ନତି ପାଇଁ ଡାମସ୍କସ୍‌ରୁ ବାଗ୍‌ଦାଦ୍‌କୁ ରାଜଧାନୀ ଉଠାଇ ଆଣିଲେ । ଏହାପରେ ବାଗ୍‌ଦାଦ୍ ପୂର୍ବକାଳର ବେବିଲୋନ ଭଳି ଏକ ସମୃଦ୍ଧିଶାଳୀ ନଗରୀରୂପେ ଗଢ଼ିଉଠିଲା । ଏହା ଫଳରେ ପାରସ୍ୟ ଉପସାଗରର ଗୁରୁତ୍ୱ ବଢ଼ିଗଲା ଏବଂ ସେଠାର ଉବୁଲା, ବସରା, ସୀରାଫ୍ ବନ୍ଦରରେ ଭାରତୀୟ ଓ ଚୀନା ନୌକାଗୁଡ଼ିକର ଭିଡ଼ ଅସମ୍ଭାଳ ହେଲା । ଚୀନର କାଣ୍ଟନ୍ ବନ୍ଦର ଠାରୁ ଚୀନା ନାବିକମାନେ ରେଶମ ବସ୍ତ୍ର, କର୍ପୂର, କସ୍ତୁରୀ ଓ ନାନାପ୍ରକାର ମସଲା ବୋଇତରେ ବୋଝାଇ ଭାରତର କରମଣ୍ଡଳ ଓ ମାଲବାର ଉପକୂଳବାଟେ ଆସି ପ୍ରତିବର୍ଷ ଖ୍ରୀଷ୍ଟ ପୂର୍ବରୁ ପାରସ୍ୟ ଉପସାଗରରେ ପହଞ୍ଚି ପାରୁଥିଲେ । ଆରବଙ୍କ ଜାହାଜ ସାଧାରଣତଃ ନଭେମ୍ବର ମାସରେ ଉବୁଲା କିମ୍ବା ସୀରାଫ୍ ବନ୍ଦରରୁ ବାହାରି ଡିସେମ୍ବର ବେଳେ ମାଲବାର କୂଳରେ ଲାଗୁଥିଲା ଏବଂ ସେଠାରେ ଶୀତକାଳର

ଘୂର୍ଣ୍ଣିବାୟୁ ଶାନ୍ତ ହେବା ପରେ ଭାରତ ଉପକୂଳ ଛାଡ଼ ଶ୍ରୀବିଜୟ, ବାଟେ ଭାସି ଆସି କାଣ୍ଟନ୍‌ଠାରେ ପହଞ୍ଚୁଥିଲା ମାର୍ଚ୍ଚ କିମ୍ବା ଏପ୍ରିଲ ମାସରେ । ଚୀନ ଓ ଆରବ ଦେଶର ନୌଚଳାଚଳର କେନ୍ଦ୍ରରେ ଅବସ୍ଥିତ ଥିବାରୁ ଭାରତର ବାଣିଜ୍ୟ ମଧ୍ୟ ଏ ସମୟରେ ବିଶେଷ ବଢ଼ି ଯାଇଥିଲା । କିନ୍ତୁ ଆରବମାନେ ଯେପରି ଏସିଆର ଜଳପଥ ଇଉରୋପରେ ବିଶେଷ ଧନଶାଳୀ ହୋଇଥିଲେ, ଭାରତୀୟମାନେ ସେପରି ଆରବ ଓ ଚୀନ ସାମ୍ରାଜ୍ୟ ମଧ୍ୟରେ ମଧ୍ୟସ୍ଥ ହୋଇ ପାରି ନ ଥିଲେ । ଭାରତର ଏ ଦୁର୍ବଳ ବାଣିଜ୍ୟ ନୀତି ମୂଳରେ ସେ କାଳର ଅରାଜକତା ଓ ଅନିଶ୍ଚିତ ପରିସ୍ଥିତି ବିଶେଷ ଭାବେ ଦାୟୀ । ଭାରତର ରାଜନୈତିକ କ୍ଷେତ୍ରରେ ବିଶୃଙ୍ଖଳା ଥିଲେ ମଧ୍ୟ ଆରବ ଓ ଚୀନ ଦେଶର ଲେଖକମାନେ ସେ ସମୟରେ ଏ ଦେଶର ଧର୍ମ, ସଂସ୍କୃତି ଓ ବିଭବରେ ବିମୋହିତ ହୋଇ ବହୁ ଉପାଦେୟ ପୁସ୍ତକ ଲେଖି ଯାଇଛନ୍ତି । ଭାରତର ବୌଦ୍ଧଧର୍ମ ସେତେବେଳେ ମଧ୍ୟ ଚୀନା ଜାତିର ପ୍ରାଣରେ ଅଶେଷ ପ୍ରେରଣା ଦେଉଥିଲା ଏବଂ ଇତ୍‌ସିଂଙ୍କ ବିବରଣୀ ଏହି ପ୍ରେରଣାରୁ ଲେଖା ହୋଇଥିବା ସୁନିଶ୍ଚିତ । କିନ୍ତୁ ଆରବଙ୍କ ମଧ୍ୟରେ ଭାରତର ଏ ଆଧ୍ୟାତ୍ମିକ ବାଣୀ ପ୍ରବେଶ କରି ପାରି ନ ଥିଲା ଏବଂ ଆରବ ଲେଖକମାନେ ଭାରତକୁ କେବଳ ଏକ ରହସ୍ୟମୟ ଦେଶ ବୋଲି ବିବେଚନା କରୁଥିଲେ । ବଣିକ ସୁଲେମନ୍ "ଅକବାର ଅଲ୍-ସିନ୍ ଓ୍ୱା ଅଲ-ହିନ୍ଦ୍" ପୁସ୍ତକରେ ଭାରତ ବିଷୟରେ ଅନେକ କଥା ଲେଖିଛନ୍ତି ଏବଂ ହରମୁଜ୍ ବନ୍ଦରର ପାରସୀ କପ୍ତାନ୍ ସାହରିୟାର୍ ଭାରତ ମହାସାଗରରେ ଘଟିଥିବା ନାନା ଅଦ୍ଭୁତ ଓ ରୋମାଞ୍ଚକର ବିବରଣୀ ତାଙ୍କର "କିତାବ୍ ଅଜାବ୍ ଅଲ୍-ହିନ୍ଦ୍" ପୁସ୍ତକରେ ଦେଇ ଯାଇଛନ୍ତି । ଏ ପୁସ୍ତକ ଦୁଇଟି ମଧ୍ୟଯୁଗର ଇଉରୋପରେ ଭାରତକୁ କୁହୁକଭରା ଦେଶ ରୂପେ

ପରିଚିତ କରିଥିଲା ଏବଂ ସେଠାର ଲୋକଙ୍କୁ ଭାରତ ପ୍ରତି ଆକୃଷ୍ଟ କରି ପାରିଥିଲା ।

କ୍ରୁସେଡ୍ ଯୁଦ୍ଧ ସମୟରେ ଇଉରୋପୀୟମାନେ ଏସିଆ ମହାଦେଶ ଆଡ଼କୁ ଝଣା ହୋଇ ଆସିଲେ ଏବଂ ଭାରତ ବିଷୟରେ ଜାଣିବା ପାଇଁ ବିଶେଷ ଆଗ୍ରହୀ ହେଲେ । କିନ୍ତୁ ତୃତୀୟ କ୍ରୁସେଡ଼ରେ ( ୧୧୮୭ ଖ୍ରୀ: ରେ ) ମୁସଲମାନ ନେତା ସାଲାଦିନ୍ ଜେରୁଜେଲମ୍ ହସ୍ତଗତ କରି ନେବାରୁ ଇଉରୋପୀୟଙ୍କ ସମସ୍ତ ଆଶା ଓ କଳ୍ପନା ଚୂର୍ଣ୍ଣ ହେଲା । ସେହି ଦିନଠୁ ଭାସ୍କୋଡ଼ାଗାମାଙ୍କ ଭାରତ ଆଗମନ ପର୍ଯ୍ୟନ୍ତ (ଖ୍ରୀ : ୧୪୯୭) ଆରବ ନୌଶକ୍ତି ପ୍ରବଳହୋଇ ଉଠିଲା ଏବଂ ଇଉରୋପ ଓ ଏସିଆ ମଧ୍ୟରେ ଏକ ସୁଦୃଢ଼ ବ୍ୟବଧାନ ସୃଷ୍ଟି କଲା ।

ଇତିମଧ୍ୟରେ ଇଟାଲିର ଭେନିସ୍ ଓ ଜେନୋଆ ରାଜ୍ୟ ଭୂମଧ୍ୟ-ସାଗରରେ ବିଶେଷ ପ୍ରଭାବଶାଳୀ ହେଲେ । ଆରବ ବଣିକମାନେ ଚୀନ ଓ ଭାରତରୁ ଆଣୁଥିବା ପଣ୍ୟଦ୍ରବ୍ୟ, ଏ ଦୁଇଟି ରାଜ୍ୟଦେଇ ଇଉରୋପର ବଜାରମାନଙ୍କରେ ପହଞ୍ଚୁଥିଲା । କ୍ରମେ ଭେନିସୀୟମାନେ ଆରବଙ୍କ ସହିତ ସନ୍ଧି କରି ଭାରତ ଓ ପୂର୍ବ ଏସିଆର ଜିନିଷ ଇଉରୋପରେ ବିକ୍ରୟ କରିବା ପାଇଁ ଏକଚାଟିଆ ଅଧିକାର ହାସଲ କଲେ । ଏହା ଫଳରେ ଜେନୋଆର ନୌବାଣିଜ୍ୟର ଉପରକୁ ସଙ୍କଟ ମାଡ଼ି ଆସିଲା ଏବଂ ଭୂମଧ୍ୟସାଗରରେ ଜେନୋଇଜ୍ ଓ ଭେନିସୀୟଙ୍କ ମଧ୍ୟରେ ବହୁକାଳ ନୌ ଯୁଦ୍ଧ ହେଲା । ଶେଷରେ ଜେନୋଇଜ୍‌ମାନେ ପରାସ୍ତ ହେଲେ ସତ କିନ୍ତୁ ଭୂମଧ୍ୟସାଗର ବାହାରେ ନୂତନ ଭାଗ୍ୟ ଅନ୍ୱେଷଣ କରିବା ପାଇଁ ଅଣ୍ଟାଭିଡ଼ ବାହାରି ପଡ଼ିଲେ । ଏଣେ ଆରବ ବଣିକମାନେ ଏସିଆର ବାଣିଜ୍ୟରେ

ଅପ୍ରତିଦ୍ୱନ୍ଦୀ ହୋଇ ମସଲାଜାତୀୟ ପଦାର୍ଥ ସବୁ ସ୍ୱର୍ଣ୍ଣ ମୂଲ୍ୟରେ ବିକ୍ରୟ କରିବାକୁ ଲାଗିଲେ ଏବଂ ଏହା ଫଳରେ ସାରା ଇଉରୋପରେ ଅତଙ୍କ ସୃଷ୍ଟି ହୋଇଥିଲା । ଫଳରେ ଧର୍ମଗତ ସହିତ ବାଣିଜ୍ୟଗତ ମେଳ ଖାଇ ଖ୍ରୀଷ୍ଟିୟାନ୍ ଓ ମୁସଲମାନମାନଙ୍କ ମଧ୍ୟରେ କ୍ରୁସେଡ୍‌ଠୁ ବଳି ତିକ୍ତଭାବ ସୃଷ୍ଟି ହେଲା ।

ମୁସଲମାନ ପ୍ରତି ଏ ବୈରୀଭାବ ସେତେବେଳେ ଜଳନ୍ତରୂପେ ପ୍ରକାଶ ପାଇଲା ସ୍ପେନ୍ ଓ ପର୍ତ୍ତୁଗାଲ୍‌ରେ । ମୁସଲମାନମାନେ ଏ ରାଜ୍ୟ ଦୁଇଟିର ଦ୍ୱାରଦେଶରେ ଆଘାତ କରି ସ୍ୱଇଂ ଦେହ ଶିହାର କରୁଥାଆନ୍ତି । ଏ ସୁଯୋଗରେ ଜେନୋଇଜ୍ ବଣିକମାନେ ସ୍ପେନ୍ ଓ ପର୍ତ୍ତୁଗାଲ୍‌ର ରାଜାଙ୍କୁ ମୁସଲମାନମାନଙ୍କ ବିରୁଦ୍ଧରେ ମତାଇ ନିଜର ଆକାଂକ୍ଷା ଫଳବତୀ କରିବା ପାଇଁ ଲାଗିପଡ଼ିଥାନ୍ତି । ସେମାନଙ୍କ ଯୁକ୍ତି ଥିଲା ଯେ ମୁସଲମାନମାନଙ୍କ ଉନ୍ନତି ମୂଳରେ କୁଠାରାଘାତ କରିବା ପାଇଁ ଭାରତକୁ ଏକ ନୂତନ ସମୁଦ୍ରପଥ ଆବିଷ୍କାର କରିବା ନିତାନ୍ତ ଆବଶ୍ୟକ । ସେତେବେଳେ ମାର୍କୋପୋଲୋଙ୍କ ଭ୍ରମଣ ବୃତ୍ତାନ୍ତ ରୁଷ୍ଟିସିଆନୋଙ୍କ ଦ୍ୱାରା ପ୍ରକାଶିତ ହେଲା ଏବଂ ତାହା ଇଉରୋପୀୟଙ୍କୁ ଭାରତ ଅନ୍ୱେଷଣ ପାଇଁ ଅପୂର୍ବ ପ୍ରେରଣା ଦେଲା । ସ୍ପେନ୍ ରାଜା ଫର୍ଡ଼ିନେଣ୍ଡ୍‌ଙ୍କ ସହାୟତାରେ ଜେନୋଇଜ୍ ନାବିକ କଲମ୍ବସ୍ ଭାରତଃ ଖୋଜିବାକୁ ଯାଇ ଆମେରିକା ଉପକୂଳରେ ଖ୍ରୀ:୧୪୯୨ରେ ପହୁଞ୍ଚିଲେ । ଏହାର ଠିକ୍ ଛଅ ବର୍ଷ ପରେ ପର୍ତ୍ତୁଗାଲର ସୁଦକ୍ଷ ନାବିକ ଭାସ୍କୋଡ଼ାଗାମା ଉତ୍ତମାଶା ଅନ୍ତରୀପ ପ୍ରଦକ୍ଷିଣ କରି ଯେତେବେଳେ ଭାରତର କାଲିକଟ୍ ବନ୍ଦରରେ ପଦାର୍ପଣ କଲେ ସେତେବେଳେ ଇଉରୋପୀୟଙ୍କ ଶତାବ୍ଦୀ ବ୍ୟାପି ସାଧନା ସଫଳ ହୋଇ ପାରିଲା । ଡା ଗାମାଙ୍କର ଏ ଆବିଷ୍କାର ପୃଥିବୀର ଇତିହାସରେ ଏକ ନୂତନ ଯୁଗ ସୃଷ୍ଟି କଲା ।

ଭାସ୍କୋଡ଼ାଗାମା ଯେତେବେଳେ ପୂର୍ବ ଆଫ୍ରିକାର ମଲିନ୍ଦ ବନ୍ଦରରେ ପହଞ୍ଚି ଭାରତକୁ ବାଟଦେଖାଇବା ପାଇଁ ଅତିବ୍ୟସ୍ତରେ ଏକ ଯୋଗ୍ୟ କର୍ଣ୍ଣଧାର ଖୋଜୁଥିଲେ, ସେତେବେଳେ ତାଙ୍କ ସାକ୍ଷାତ ହୋଇଥିଲା, ଆରବ ନାବିକ ଅହମ୍ମଦ୍‌ବିନ୍ ମାଜିଦ୍‌ଙ୍କ ସହିତ । ଅହମଦ୍ ବିନ୍‌ଙ୍କ ଜୀବନରେ ଏକମାତ୍ର ଲକ୍ଷ୍ୟ ଥିଲା ଆରବଙ୍କ ନୌବାଣିଜ୍ୟର ଚିରସ୍ଥାୟୀ ଉନ୍ନତି ସାଧନ କରିବା ଏବଂ ସେଥିପାଇଁ ସେ ବହୁମାନ ଗ୍ରନ୍ଥ ପ୍ରଣୟନ କରିଥିଲେ । କିନ୍ତୁ ଭାସ୍କୋଡ଼ାଗାମାଙ୍କୁ ଅତି ଆଗ୍ରହରେ କାଲିକଟ୍ ବନ୍ଦରକୁ ଡାକିଆଣିବା ବେଳେ ସେ କଳ୍ପନା କରି ପାରି ନଥିଲେ ଯେ ତଦ୍ୱାରା ସେ ଆରବଙ୍କ ନୌବାଣିଜ୍ୟ ଉପରେ କବର ଗଢ଼ି ଯାଉଛନ୍ତି । ଇତିହାସର ଏ ପରିହାସ ବୁଝିବା ହତଭାଗ୍ୟ ଆରବ ନାବିକଙ୍କ ସାଧ୍ୟାତୀତ ଥିଲା ଏବଂ ଭାସ୍କୋଡ଼ାଗାମାଙ୍କ ପରେ ପର୍ତ୍ତୁଗିଜ୍ ନୌଶକ୍ତି ଦ୍ୱାରା ଆରବଙ୍କ ସମସ୍ତ ପ୍ରଭାବ ଭାରତ ମହାସାଗରରୁ ଲୁପ୍ତ ହେଲା ।

## ଭାରତରେ ଇଉରୋପୀୟ ବଣିକ:—

ପର୍ତ୍ତୁଗିଜ୍‌ମାନେ ଭାରତ ଉପକୂଳରେ ପହଞ୍ଚିବା ବେଳେ ସେଠାରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ରାଜନୈତିକ ବିବାଦ ଚାଲିଥାଏ । ବିଜୟନଗରର ହିନ୍ଦୁରାଜ୍ୟ ବାହମନୀ ସୁଲତାନମାନଙ୍କ ଆଧିପତ୍ୟ ଖର୍ବକରିବା ପାଇଁ ସେତେବେଳେ ଚେଷ୍ଟିତ ଥିଲା । କୋଚିନ୍, କାନାନୋର ଆଦି କ୍ଷୁଦ୍ର ରାଜ୍ୟଗୁଡ଼ିକରେ ମଧ୍ୟ ମୁସଲିମ୍ ଅତ୍ୟାଚାର ବିରୁଦ୍ଧରେ ଦୃଢ଼ ପ୍ରତିକ୍ରିୟା ଦେଖା ଦେଇଥିଲା । ମୁସଲମାନମାନଙ୍କ ଦୁର୍ବାର ଶତ୍ରୁ ପର୍ତ୍ତୁଗିଜ୍ ଜାତିପକ୍ଷରେ ଭାରତର ଏ ରାଜନୈତିକ ପରିସ୍ଥିତି ବେଶ୍ ଅନୁକୂଳ ହୋଇଥିଲା । କିନ୍ତୁ



ଭସ୍କୋଡ଼ାଗାମାଙ୍କ ଜାହାଜ

କାଲିକଟ୍‌ର ହିନ୍ଦୁ ଜାମୋରିନ୍ ସେତେବେଳେ ଥିଲେ ଆରବଙ୍କ ଘନିଷ୍ଠ ବନ୍ଧୁ ଏବଂ ତାଙ୍କର ବନ୍ଧୁତା ମୂଳରେ ରାଜନୈତିକ ମନୋଭାବ ନ ଥାଇ, ଥିଲା ବାଣିଜ୍ୟିକ ମନୋଭାବ । କାଲିକଟ୍‌ର ସମସ୍ତ ସମୃଦ୍ଧି ଓ ନୌଶକ୍ତି ସମ୍ଭବ ହୋଇଥିଲା ଆରବଙ୍କ ସହିତ ଦୀର୍ଘ ଶହେଶହ ବର୍ଷ ଧରି ଚାଲିଥିବା ନୌବାଣିଜ୍ୟ ନିମନ୍ତେ । ସୁତରାଂ ପର୍ତ୍ତୁଗିଜ୍‌ଙ୍କୁ ଜାମୋରିନ୍ ଏବଂ ଆରବଙ୍କ ମିଳିତ ଶକ୍ତି ସହିତ ବହୁକାଳ ଯାଏ ଲଢ଼ିବାକୁ ହୋଇଥିଲା । ୧୫୧୧ ଖ୍ରୀ: ରେ ପର୍ତ୍ତୁଗିଜ୍ ଶାସକ ଅଲ୍‌ବୁକର୍କ ମଲକ୍‌କାର ମୁସଲମାନ୍-ରାଜ୍ୟ ନିର୍ମମ ଭାବେ ଧ୍ୱଂସ କଲେ ଏବଂ ସେହିଦିନୁ ଭାରତ ମହାସାଗରର ବାଣିଜ୍ୟରେ ଆରବଙ୍କ ପ୍ରଭାବ ଆଉ ରହିପାରିଲା ନାହିଁ ।

ଆରବଙ୍କର ଉନ୍ନତି ସହିତ ତୁର୍କୀ ସାମ୍ରାଜ୍ୟର ଉନ୍ନତି ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲା । ତେଣୁ ଆରବ ବାଣିଜ୍ୟର ପତନ ହେତୁ ଉକ୍ତ ସାମ୍ରାଜ୍ୟ ଟଳମଳ ହେଲା । ତୁର୍କୀ ସମ୍ରାଟ୍ ସୁଲେମନ୍ ୧୫୩୮ ଖ୍ରୀ:ରେ ମିଶରର ପାସା ସୁଲେମନଙ୍କୁ ଏକ ନୌଶକ୍ତି ସହ ପଠାଇଥିଲେ ଭାରତ ମହାସାଗରରେ ଆରବଙ୍କ ଆଧିପତ୍ୟ ଉଦ୍ଧାର କରିବାପାଇଁ । କାଲିକଟ୍‌ର ଜାମୋରିନ୍ ମଧ୍ୟ ନିଜର ସମସ୍ତ ଶକ୍ତି ଦେଇ ସୁଲେମନ୍ ପାସାଙ୍କୁ ସାହାଯ୍ୟ କଲେ ଏବଂ ଯୁଦ୍ଧରେ ପର୍ତ୍ତୁଗିଜ୍‌ମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କଲେ । କିନ୍ତୁ ସୁଲେମନ୍ ପାସା ମିଶର ଲେଉଟିବା ପରେ ଏ ବିଜୟର ପ୍ରଭାବ ଉଭେଇଗଲା ଏବଂ ପର୍ତ୍ତୁଗିଜ୍‌ମାନେ ପୁଣି ଭାରତ ମହାସାଗରରେ ଥିବା ଆସ୍ଥାନ ମାଡ଼ିବସିଲେ । ସେମାନଙ୍କର ଏକମାତ୍ର ଶତ୍ରୁ ଥିଲେ କାଲିକଟ୍‌ର ଜାମୋରିନ୍ ଏବଂ ୧୫୯୯ ଖ୍ରୀ:ରେ ଏ ଉଭୟ ଶକ୍ତି ମଧ୍ୟରେ ସନ୍ଧି ହେବାଯାଏ ଆରବସାଗର ଉପକୂଳରେ ଏମାନଙ୍କ ଖଣ୍ଡଯୁଦ୍ଧ ଲାଗି ରହିଥିଲା । ସମୁଦ୍ର ଭିତର ଅଞ୍ଚଳରେ ପର୍ତ୍ତୁଗିଜ୍

ପ୍ରଭାବ ଅତି ଦୃଢ଼ ଥିଲେ ସୁଦ୍ଧା ଭାରତର ଉପକୂଳରେ ଜାମୋରିନ୍‌ଙ୍କ ନୌଶକ୍ତି ଅଜେୟ ଥିଲା ଏବଂ ଗୋଆ, ଡିଉ ଓ କୋଚିନ୍ ନିକଟରେ ପର୍ତ୍ତୁଗିଜ୍‌ଙ୍କ ଯେଉଁ କେତୋଟି ବାଣିଜ୍ୟ କୋଠି ଥିଲା ତାହା କେବଳ ବିଜୟନଗର, କୋଚିନ ଓ ଅନ୍ୟ ହିନ୍ଦୁ ରାଜାଙ୍କ କୃପାରୁ ସମ୍ଭବ ହୋଇପାରିଥିଲା ।

ପର୍ତ୍ତୁଗିଜଙ୍କ ଭାରତ ମହାସାଗରରେ ଶହେବର୍ଷକାଳ ଯେଉଁ ଅଖଣ୍ଡ ଆଧିପତ୍ୟ ଥିଲା ସେଥିରେ ପ୍ରଥମେ ଡଚ୍ ବଣିକଙ୍କ ସମର୍ଥନ ଥିବା ଜଣାପଡେ । କିନ୍ତୁ ଷୋଡ଼ଶ ଶତାବ୍ଦୀର ଶେଷବେଳେ ହଲାଣ୍ଡର ଆମଷ୍ଟରଡାମ୍ ଓ ଆଣ୍ଟର୍ପ୍ ଆଦି ବଜାରରେ ଡଚ୍ ଓ ପର୍ତ୍ତୁଗିଜ୍‌ଙ୍କ ମଧ୍ୟରେ ଭୀଷଣ କଳଗୋଳ ହେଲା ଏବଂ ଏହାଫଳରେ ଡଚ୍‌ମାନଙ୍କ ଇଷ୍ଟଇଣ୍ଡିଆ କୋଂପାନୀ ଗଢ଼ାହେଲା ସପ୍ତଦଶ ଶତାବ୍ଦୀ ଆରମ୍ଭରେ । ଡଚ୍‌ମାନେ ପର୍ତ୍ତୁଗିଜ୍‌ଙ୍କ ଚିର ଶତ୍ରୁ ଜାମୋରିନ୍‌ଙ୍କ ସହ ମିତ୍ରତା ସ୍ଥାପନକରି ଭାରତ ମହାସାଗରରେ ଶୀଘ୍ର ପ୍ରଭାବଶାଳୀ ହେଲେ ଏବଂ ପୂର୍ବଦ୍ୱୀପପୁଞ୍ଜରେ ଥିବା ପର୍ତ୍ତୁଗିଜ୍‌ଙ୍କ ବାଣିଜ୍ୟ କେନ୍ଦ୍ରମାନ ହସ୍ତଗତ କଲେ । ପର୍ତ୍ତୁଗିଜ୍‌ଙ୍କ ଭାଗ୍ୟବିପର୍ଯ୍ୟୟ ବେଳେ ସେମାନଙ୍କ ଔଦ୍ଧତ୍ୟ ଓ ବର୍ବରତା ଅତି ମାତ୍ରାରେ ବଢ଼ିଥିବା ଦେଖାଯାଏ । ସେମାନେ ସେତେବେଳେ ହିନ୍ଦୁ ମୁସଲମାନ ନିର୍ବିଶେଷରେ ବଳପୂର୍ବକ ଅସଂଖ୍ୟ ଭାରତୀୟଙ୍କୁ ଖ୍ରୀଷ୍ଟିୟାନ କରି ସେମାନଙ୍କ ଧର୍ମମନ୍ଦିରମାନ ଧ୍ୱଂସ କରିଦେଉଥିଲେ । ଖ୍ରୀ: ୧୬୩୨ ରେ ସାମ୍ରାଜ୍ଞୀ ମମତାଜ ମହଲଙ୍କ ଦାସୀମାନଙ୍କୁ ମଧ୍ୟ ଅପହରଣ କରିବାକୁ ସେମାନେ ଡରିଲେ ନାହିଁ । ଏ ଔଦ୍ଧତ୍ୟ ହେତୁ ମୋଗଲ ସମ୍ରାଟଙ୍କ କ୍ରୋଧାଗ୍ନିରେ ପର୍ତ୍ତୁଗିଜ୍ ପ୍ରାଧାନ୍ୟ ଭାରତରୁ ଲୋପପାଇଲା । ହୁଗଲୀରେ ଥିବା ପ୍ରାୟ ଦଶ ହଜାର ନର ନାରୀଙ୍କ ମଧ୍ୟରୁ ଅଧିକାଂଶ ମୋଗଲ କମାଣର ଶିକାର

ହେଲେ ଏବଂ ଅବଶିଷ୍ଟ ଦାଲ୍ଲି ଓ ଆଗ୍ରାର ବନ୍ଦୀଶାଳାରେ ମଲେ । ୧୬୪୧ ସାଲରେ ମଲକ୍କାର ସୁଦୃଢ଼ ଦୁର୍ଗ ଡଚ୍‌ମାନେ ଅଧିକାର କରିନେବା ପରେ ଭାରତ ମହାସାଗରରେ ପର୍ତ୍ତୁଗିଜ୍ ଶକ୍ତି ଲୋପ ହେଲା ଏବଂ ଆଫ୍ରିକାର ଉପକୂଳରୁ ଚୀନ ଉପକୂଳ ଯାଏ ଡଚ୍ ଜାହାଜ ନିର୍ଭୟରେ ବୁଲିଲା ।

ଡଚ୍ ବଣିକଙ୍କ ଇଷ୍ଟଇଣ୍ଡିଆ କୋମ୍ପାନୀ ଗଢ଼ାହେବା ବର୍ଷକ ପୂର୍ବେ ଇଂରାଜଙ୍କ ଇଷ୍ଟଇଣ୍ଡିଆ କୋମ୍ପାନୀ ଗଠିତ ହୋଇ ପୂର୍ବ-ଏସିଆରେ ବାଣିଜ୍ୟ କରିବା ପାଇଁ ରାଣୀ ଏଲିଜାବେଥ୍‌ଙ୍କଠାରୁ ଅନୁମତି ପାଇଥିଲେ । ତେଣୁ ଭାରତ ମହାସାଗରରେ ପର୍ତ୍ତୁଗିଜ୍‌ଙ୍କ ସହିତ ଇଂରାଜଙ୍କ ମଧ୍ୟ ସମ୍ମୁଖୀନ ହେବାକୁ ପଡ଼ୁଥିଲା ଡଚ୍‌ମାନଙ୍କୁ । କିନ୍ତୁ ଇଂରାଜ ନୌଶକ୍ତି ଡଚ୍‌ମାନଙ୍କ ସମକକ୍ଷ ହୋଇ ପାରି ନ ଥିଲା ଓ ଶେଷରେ ପୂର୍ବଅଞ୍ଚଳରୁ ତଡ଼ାଖାଇ ଇଂରାଜ ବଣିକ ଭାରତର ଉପକୂଳରେ ଆଶ୍ରୟ ନେଉ଼ବାକୁ ବାଧହେଲେ । ୧୬୧୨ ଖ୍ରୀ: ରେ ତାପ୍ତି ମୁହାଣରେ ଥିବା ସୁରଟ ବନ୍ଦରରେ ଇଂରାଜଙ୍କ ବାଣିଜ୍ୟକୋଠି ଗଢ଼ାହେଲା ଏବଂ ଏହା ପରେ ଭାରତର କାର୍ପାଶ ବସ୍ତ୍ର ହେଲା ସେମାନଙ୍କ ବାଣିଜ୍ୟର ସମ୍ବଳ । ଏ ବସ୍ତ୍ର ବାଣିଜ୍ୟର ଉନ୍ନତି ନିମନ୍ତେ ୧୬୪୧ରେ ମୁସଲିପଟ୍ଟମ୍ ବନ୍ଦରରେ ସେମାନଙ୍କର ମସ୍ତବଡ଼ ଗୋଦାମ ଘର ତିଆରି ହେଲା । ସେଇବର୍ଷ ଚନ୍ଦ୍ରଗିରି ରାଜାଙ୍କ ଅନୁଗ୍ରହ ଲାଭ କରି ମାନ୍ଦ୍ରାଜଠାରେ ସେମାନେ ସେଣ୍ଟଜର୍ଜ ଦୁର୍ଗ ଗଢ଼ିଥିଲେ ଏବଂ ଏହାଦ୍ୱାରା ସେମାନଙ୍କ ଉପରେ ଡଚ୍ ଆକ୍ରମଣର ବିପଦ କମିଯାଇଥିଲା । ୧୬୬୫ରେ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସ୍ ପର୍ତ୍ତୁଗାଲ୍ ରାଜକୁମାରୀ କାଥାରିନ୍‌ଙ୍କୁ ବିବାହ କରି ବମ୍ବେ ଦ୍ୱୀପ ପାଇଥିଲେ ଯୌତୁକରୂପେ ଏବଂ ଇଂରାଜ କୋମ୍ପାନୀ ଏ ଦ୍ୱୀପର ଅଧିକାରୀ ହୋଇ ପାରିଥିଲେ ୧୬...

ଖ୍ରୀଷ୍ଟାବ୍ଦରେ । ଏଇବର୍ଷ ଭାରତରେ ଇଂରାଜ ବାଣିଜ୍ୟର ପରିଚାଳକ ରୂପେ ଆସିଥିଲେ ସାର୍ ଜୋସିଆ ଚାଇଲ୍ଡ଼—ଜଣେ ଉଚ୍ଚାଭିଳାଷୀ କ୍ଷିଅଲ୍ପ ବଣିକ । ଜୋସିଆଙ୍କ ଧାରଣା ଥିଲା ଯେ ସେ ମୋଗଲ ସମ୍ରାଟ ବା ଚୀନ୍ ସମ୍ରାଟଙ୍କ ଭଳି କିଛି ନ ହୋଇ ସାଧାରଣ ବଣିକରୂପେ ଜଣାହେବା ନିଶ୍ଚିତ ଭୁଲ ଛଡ଼ା ଆଉ କିଛି ନୁହେଁ । ସେ ମୋଗଲ ସରକାରଙ୍କ ବଳ କଷିବା ନିମନ୍ତେ ସମ୍ରାଟ୍ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ବିନାକାରଣରେ ଯୁଦ୍ଧ ଘୋଷଣା କରିଦେଲେ । କିନ୍ତୁ ମୋଗଲ ନୌବଳ ଆଗରେ ଇଂରାଜଙ୍କ ଶକ୍ତି ଖାଟିପାରିଲା ନାହିଁ । ଫଳରେ ପୂର୍ବ ଭାରତରେ କୋମ୍ପାନୀଙ୍କ ସମସ୍ତ ଉପନିବେଶ ଧ୍ୱଂସ ହେଲା । ପରେ ଆଉରଙ୍ଗଜେବଙ୍କ ପାଖରେ ଶରଣ ନେଇ ଇଂରାଜମାନେ ହୁଗୁଳୀନଦୀ କୂଳରେ ଏକ ଧୀବର ଗାଁରେ ବସତି କରିବା ପାଇଁ ଅନୁମତି ପାଇଲେ ଏବଂ ସେଠି ୧୬୯୬ ଖ୍ରୀ : ରେ ଫୋର୍ଟ ଉଇଲିୟମ୍ ଗଢ଼ିଲେ । ସୁତରାଂ ସପ୍ତଦଶ ଶତାବ୍ଦୀର ଶେଷ ବେଳକୁ ମାନ୍ଦ୍ରାଜ, ବମ୍ବେ ଓ କଲିକତା ସହର ତିନୋଟି ଭାରତରେ ଇଂରାଜଙ୍କ ଲାଳନ ଭୂମିରୂପେ ବିକାଶ ଲାଭ କଲା ।

ଇଉରୋପୀୟଙ୍କ ମଧ୍ୟରେ ଫରାସୀଜାତି ଭାରତ ମହାସାଗରକୁ ଆସିଲେ ସବାଶେଷରେ । ଫ୍ରାନ୍ସ୍‌ର ସୁବିଖ୍ୟାତ ମନ୍ତ୍ରୀ କଲବାର୍ଟଙ୍କ ପ୍ରେରଣାରେ ଫରାସୀ ଇଷ୍ଟଇଣ୍ଡିଆ କୋମ୍ପାନୀ ୧୬୬୪ ଖ୍ରୀ:ରେ ଗଢ଼ାହୋଇ ବାଣିଜ୍ୟ ନିମନ୍ତେ ସିଂହଳରେ ଆସି ପ୍ରଥମେ ପହଞ୍ଚିଲେ । କିନ୍ତୁ ଡଚ୍ ବଣିକଙ୍କ ଦୃଢ଼ ପ୍ରତିରୋଧ ହେତୁ ସିଂହଳ ଭୂମିରେ ଫରାସୀମାନେ ପାଦ ଦେଇ ପାରିଲେ ନାହିଁ । ହତାଶହୋଇ ସେମାନେ ଭାରତର ଉପକୂଳ ଆଡ଼କୁ ଦୃଷ୍ଟି ଫେରାଇଲେ ଏବଂ ଶେଷରେ ଫ୍ରାନ୍‌ସିସ୍ ମାର୍ଟିନ୍‌ଙ୍କର ଉଦ୍ୟମରେ ପଣ୍ଡିଚେରୀଠାରେ ଏକ

ଫରାସୀ ଉପନିବେଶ ଗଢ଼ା ହେଲା ୧୬୭୦ ଖ୍ରୀ:ରେ । କାରିକଲ, ମାହ୍ଵୀ ଓ ଚନ୍ଦନ୍ ନଗରଠାରେ ପରେ ଫରାସୀଙ୍କ ବାଣିଜ୍ୟ କୋଠି ଛଆଣି ହେଲା । କିନ୍ତୁ ଭାରତ ମହାସାଗରରେ ଥିବା ବାଣିଜ୍ୟରେ ତାଙ୍କର ପ୍ରଭାବ ଓଲ୍ କମ୍ପା ଇଂରାଜଙ୍କ ଭଳି ଶକ୍ତିଶାଳୀ ହୋଇ ପାରିଲା ନାହିଁ ।

ଇଉରୋପୀୟ ପୁଞ୍ଜିପତି ଓ ବଣିକ ଭାରତ ମହାସାଗରରେ ବାଣିଜ୍ୟ ସ୍ଥାପନ କଲାବେଳେ ଭାରତୀୟଙ୍କ ନୌବଳ ଅତି ପ୍ରଭାବଶାଳୀ ଥିବା ଜଣାପଡ଼େ । ପର୍ତ୍ତୁଗିଜ୍‌ମାନେ ଏକଶତାବ୍ଦୀକାଳ ସମସ୍ତ ଶକ୍ତି ପ୍ରୟୋଗକରି ସୁଦ୍ଧା ଜାମୋରିନ୍‌ଙ୍କ ଉପକୂଳରେ ବାଣିଜ୍ୟ କରିପାରି ନ ଥିଲେ ଏବଂ ଶେଷରେ ଜାମୋରିନ୍‌ଙ୍କ ଶତ୍ରୁତା ଏମାନଙ୍କର ପତନର ପ୍ରଧାନ କାରଣ ହୋଇଥିଲା । ୧୬୩୨ ଖ୍ରୀ: ରେ ସାଜାହାନଙ୍କ ପର୍ତ୍ତୁଗିଜ୍ ଦଳନ ସାରା ଇଉରୋପରେ କଂପନ ସୃଷ୍ଟି କରିଥିଲା ଏବଂ ଇଂରାଜ ବଣିକ ଜୋସିଆ ଆଉରଙ୍ଗଜେବଙ୍କ ନୌଶକ୍ତିକୁ ହେୟଜ୍ଞାନ କରିଥିବା ହେତୁ ସର୍ବସ୍ୱ ଲୁଣ୍ଠିତ ହୋଇଥିଲେ । ଭାରତର ଉପକୂଳରେ ମରହଟ୍ଟାଙ୍କ ନୌବାହିନୀ ବହୁକାଳ ଧରି ଇଉରୋପୀୟଙ୍କ ପ୍ରାଣରେ ଆତଙ୍କ ସୃଷ୍ଟି କରିଥିଲା । ଖ୍ରୀ: ୧୭୨୨ରେ ଇଂରାଜମାନେ ପର୍ତ୍ତୁଗିଜ୍‌ଙ୍କ ସହିତ ମିଶି ମରହଟ୍ଟାଙ୍କ ସହିତ ଲଢ଼ିବା ପାଇଁ ସାହସ ବାନ୍ଧି ବାହାରିଥିଲେ କିନ୍ତୁ କାନୋଜୀଆଙ୍ଗ୍ରିଆଙ୍କ ନୌବାହିନୀର ପ୍ରଚଣ୍ଡ ଆକ୍ରମଣରେ ଭୟ ବିହ୍ୱଳିତ ହୋଇ ପୃଷ୍ଠଭଙ୍ଗ ଦେଲେ । ଖ୍ରୀ: ୧୭୩ ରେ ମାଲାବାର ଉପକୂଳର ଇଂରାଜମାନେ ତାଙ୍କ ସରକାରଙ୍କୁ ଗୁହାରି କରି ଜଣାଇଥିଲେ ଯେ ସମ୍ଭାଜୀ ଆଙ୍ଗ୍ରିଆଙ୍କ ନୌବଳ ଦେଖି ସେମାନେ ନିଜକୁ ଅସହାୟ ମନେକରି ଭୀତତ୍ରସ୍ତ ହେଉଅଛନ୍ତି । ଇଉରୋପୀୟଙ୍କ ମଧ୍ୟରେ ନୌଶକ୍ତିରେ ଶ୍ରେଷ୍ଠସ୍ଥାନ ପାଇଥିବା ଡଚ୍

ଜାତି ଗ୍ଲେଟିଆ ତ୍ରାଭାଙ୍କୋର ରାଜ୍ୟର ନୌବଳ ଦ୍ୱାରା ୧୭୩୯ରେ ଲଜ୍ଜି ହୀନ ଭାବେ ପରାସ୍ତ ହେଲେ । ଏ ନୌଯୁଦ୍ଧ ପରେ ଭାରତୀୟ ନୌବାହିନୀ ଯେ ଇଉରୋପୀୟଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ଏଥିରେ ଆଉ ସନ୍ଦେହ ରହିଲା ନାହିଁ ।

କେବଳ ନୌଚାଳନା ଓ ନୌଯୁଦ୍ଧରେ ନୁହେଁ, ବାଣିଜ୍ୟ ପରିଚାଳନାରେ ମଧ୍ୟ ଅଷ୍ଟାଦଶ ଶତାବ୍ଦୀଯାଏ ଇଉରୋପୀୟ ଜାତି ଭାରତୀୟଙ୍କ ସମକକ୍ଷ ହୋଇପାରି ନ ଥିଲେ । ଭାରତରୁ ମସଲା, କାର୍ପାସବସ୍ତ୍ର ଓ ଜଙ୍ଗଲଜାତ ବହୁ ଜିନିଷ ବୋଝ ଶହ ଶହ ବୋଇତ ପ୍ରତିବର୍ଷ ଇଉରୋପ ଯାଉଥିଲାବେଳେ ଇଉରୋପରୁ କୌଣସି ପ୍ରକାର ପଣ୍ୟଦ୍ରବ୍ୟ ଭାରତକୁ ଆସିପାରୁ ନ ଥିଲା । ସେତେବେଳେ ଆମେରିକାର ବିଭିନ୍ନ ଅଞ୍ଚଳରୁ ବହୁପରିମାଣରେ ସୁନା, ରୁପା ଓ ମୂଲ୍ୟବାନ ଜିନିଷ ଇଉରୋପୀୟମାନେ ବୋଝେଇ ଆଣୁଥିଲେ ଏବଂ ଆମେରିକା ଭାଙ୍ଗି ଇଉରୋପ ଗଢ଼ିବାରେ ଲାଗିଥିଲେ । କିନ୍ତୁ ଆମେରିକାରୁ ଯାହା ଟଙ୍କା ସୁନା ଆସୁଥିଲା ତାହାର ଅଧିକ ଭାଗ ଯାଉଥିଲା ଭାରତକୁ ଏବଂ ଭାରତ ସହିତ ଚାଲିଥିବା ବାଣିଜ୍ୟ ଇଉରୋପର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଉଥିଲା । ସୁତରାଂ ଭାରତୀୟ ବାଣିଜ୍ୟ ପୂର୍ବେ ଯେପରି ରୋମ ସାମ୍ରାଜ୍ୟରେ ଅନାଟନ ସୃଷ୍ଟି କରିଥିଲା ପ୍ରାୟ ସେଇ ଧରଣର ସମସ୍ୟା ଦେଖାଦେଲା ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀର ଇଉରୋପରେ । ଅର୍ଥନୀତିଜ୍ଞ ସାନ୍‌ସନ୍ ବ୍ରିଟିଶ ନାରୀଙ୍କ ବ୍ୟସନ ଓ ବେଶଭୂଷାର ଲାଳସା ବଢ଼ୁଥିବାରେ ଯେଉଁ ବିଦ୍ରୂପ କରିଛନ୍ତି ତାହା ରୋମାନ ଐତିହାସିକ ପ୍ଲିନି ଓ ନୀତିବାଦୀ ସିନେକାଙ୍କ ଭର୍ତ୍ସନାର ପ୍ରତିଧ୍ୱନି ପରି ମନେହୁଏ । ଭାରତୀୟ କାର୍ପାସ ବସ୍ତ୍ର ହେତୁ ଖ୍ରୀ: ୧୬୭୭ ବେଳକୁ ଇଂଲଣ୍ଡର ପଶମ ଶିଳ୍ପ ମାଡ଼ା ପଡ଼ିଗଲା ଏବଂ

ସେହିବର୍ଷ ଇଂରାଜ ରାଜନୈତିକମାନେ ପର୍ଲିଆମେଣ୍ଟରେ ଆଇନ ପାସ୍ କରି ଲୋକଙ୍କୁ ଅନ୍ତତଃ ଶୀତକାଳରେ ଦେଶୀ ପଶମ ବ୍ୟବହାର କରିବା ପାଇଁ ବାଧ୍ୟ କଲେ । କିନ୍ତୁ ଏଥିରେ ସୁଦ୍ଧା ଭାରତର ବସ୍ତ୍ରଶିଳ୍ପ ସହିତ ଇଂଲଣ୍ଡ ପଶମ ବ୍ୟବସାୟ ସମତା ରଖି ପାରିଲା ନାହିଁ ଏବଂ ଖ୍ରୀ:୧୭୯୫ ରେ ଭାରତୀୟ ବସ୍ତ୍ର ପୁରାପୁରି ବର୍ଜନ କରିବା ପାଇଁ ବହୁ ଇଂରାଜନେତା ପାଟି କରିଥିଲେ । ଫ୍ରାନ୍ସ୍, ହଲଣ୍ଡ୍ ଆଦି ଦେଶରେ ମଧ୍ୟ ଭାରତୀୟ ପଣ୍ୟ ସେଭଳି ସମସ୍ୟା ସୃଷ୍ଟି କରିଥିଲା ଏବଂ ସେ ସବୁ ଦେଶରେ ଇଂଲଣ୍ଡ ପରି ଭାରତର ବସ୍ତ୍ର ବର୍ଜନ କରିବା ଆନ୍ଦୋଳନ ଚାଲିଥିଲା ।

### ବଣିକ ମାଲିକ ହେଲେ—

ଭାରତ ନୌଶକ୍ତି, ଶିଳ୍ପ ଚାତୁରୀ ଓ ବାଣିଜ୍ୟ ପଟୁତା ଅଷ୍ଟାଦଶ ଶତାବ୍ଦୀର ପ୍ରଥମଭାଗ ଯାଏ ଏତେ ଅଗ୍ରଗତି ଲାଭ କରିଥିଲେ ସୁଦ୍ଧା ସେହି ଶତାବ୍ଦୀର ଶେଷବେଳକୁ କିପରି ସେସବୁ ଧ୍ୱଂସ ପାଇଲା ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଇଉରୋପରେ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଯେଉଁ ଶିଳ୍ପ ବିପ୍ଳବ ଚାଲିଲା ଏବଂ ନୂତନ ଅର୍ଥ ନୀତିର ପ୍ରଚଳନ ହେଲା ତାହା ଦ୍ୱାରା ଆଧୁନିକ ପଶ୍ଚିମ ସଭ୍ୟତା ଗଢ଼ି ଉଠିଲା । ଏସିଆର ରାଜ୍ୟଗୁଡ଼ିକ ପୁରୁଣା ଢଙ୍ଗର କୁଟୀରଶିଳ୍ପ ଉପରେ ନିର୍ଭରକରି ପୃଥିବୀର ଏହି ନୂତନ ଆନ୍ଦୋଳନରେ ଭାଗ ନେବାପାଇଁ ଚେଷ୍ଟା କଲେ ନାହିଁ । ଏଣୁ ଏସିଆ ପଶ୍ଚାତ୍‌ପଦ ରୂପେ ଗଣ୍ୟହେଲା । ଇଉରୋପର ଅର୍ଥନୀତି ଓ ସାମ୍ରାଜ୍ୟବାଦ୍ ତୁର୍କୀଠାରୁ ଚୀନଯାଏ ସମୁଦାୟ ରାଜ୍ୟ ଦଳି ଶୋଷଣ କରିବା ପାଇଁ ଅଗ୍ରସର ହେଲା । ଊନବିଂଶ ଶତାବ୍ଦୀର ଆରମ୍ଭରେ ଭାରତରେ ଶକ୍ତିଶାଳୀ

ହୋଇ ଉଠିଥିବା ମରହଟ୍ଟା ଶକ୍ତି ଇଂରେଜଙ୍କ ଦ୍ୱାରା ପରାସ୍ତ ହୋଇ ଛିନ୍ନଭିନ୍ନ ହେଲ ଏବଂ ଅଭିଶପ୍ତ ଭାରତ ତାହାର ସକଳ ଆତ୍ମଗୌରବ ହରାଇ ଇଂରାଜ ସାମ୍ରାଜ୍ୟବାଦର କବଳରେ ପଡ଼ିଲା ।

ଭାରତରେ ଇଂରାଜ ଶାସନ ପ୍ରତିଷ୍ଠିତ ହେବା ହେତୁ ଲୋହିତ ସାଗରରୁ ଚୀନ ସାଗରଯାଏ ଏସିଆର ଉପକୂଳ ଅଞ୍ଚଳରେ ଇଂରାଜ ନୌପ୍ରଭାବ ପ୍ରବଳ ହୋଇ ଉଠିଲା । ଭାରତ ମହାସାଗର ମଧ୍ୟରେ ଡଚ୍, ପର୍ତ୍ତୁଗିଜ୍ ବା ଫରାସୀ ଆଉ କେହି ଇଂରାଜଙ୍କ ପ୍ରତିଦ୍ୱନ୍ଦ୍ୱୀ ହୋଇ ତିଷ୍ଠିବା ସମ୍ଭବପର ହେଲ ନାହିଁ । ଇଉରୋପରେ ଇଂଲଣ୍ଡ ସହିତ ନେପୋଲିୟନଙ୍କ ଯୁଦ୍ଧ ଚାଲିଥିବା ବେଳେ ଏଣେ ଏସିଆରେ ଡଚ୍ ଅଧୀନରେ ଥିବା ଦ୍ୱୀପ ସବୁ ଇଂରେଜମାନେ ଅଧିକାର କରିନେଇ-ଥିଲେ । ପରେ ଖ୍ରୀ:୧୮୨୬ରେ ଡଚ୍‌ମାନେ ଇଣ୍ଡୋନେସିଆ ଦ୍ୱୀପମାଳା ଇଂରେଜଙ୍କଠାରୁ ଫେରି ପାଇବା ପରେ ସେମାନଙ୍କ ପ୍ରତି ଚିରକାଳ କୃତଜ୍ଞ ହୋଇ ରହିଲେ । ୧୮୪୨ ଖ୍ରୀ:ରେ ଚୀନ ଇଂରାଜ ନୌଶକ୍ତି ଦ୍ୱାରା ସଂପୂର୍ଣ୍ଣ ରୂପେ ପରାସ୍ତ ହେଲା ଏବଂ ସେ ଦେଶରେ ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କ ଅଫିମ ବ୍ୟବସାୟ ଦୃଢ଼ ହେଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ବ୍ରହ୍ମଦେଶ ଇଂରାଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା ଏବଂ ଆରବ, ପାରସ୍ୟ ଓ ଆଫଗାନିସ୍ଥାନରେ ଇଂରାଜ ପ୍ରଭାବ ଶକ୍ତିଶାଳୀ ହୋଇ ଉଠିଲା । ସୁତରାଂ ଭାରତର ସମସ୍ତ ସମ୍ବଳର ଅଧିକାରୀ ହୋଇ ଏବଂ ତାହାର ଭୌଗୋଳିକ ସ୍ଥିତିର ସୁଯୋଗ ନେଇ ଇଂରାଜଜାତି ଦକ୍ଷିଣ ଏସିଆ ଓ ଭାରତ ମହାସାଗରରେ ଯେଉଁ ଶକ୍ତି ଗଢ଼ିଲେ ତାହା ଇତିହାସରେ କେବେ କେଣା ନ ଥିଲା ।

ଇଂରାଜ ଅଧୀନରେ ଭାରତର ନୌବାଣିଜ୍ୟ ଇଂରାଜ ମୁଷ୍ଟିପତିଙ୍କ ଏକଚାଟିଆ ଅଧିକାରକୁ ଆସିବା ସ୍ୱାଭାବିକ କଥା । ବହୁକାଳରୁ ଖ୍ୟାତି ଲାଭ କରିଥିବା ଭାରତର କାର୍ପାସ ଶିଳ୍ପ ସେତେବେଳେ ଧ୍ୱଂସ ପ୍ରାପ୍ତ ହେଲା ଏବଂ ମାନ୍ ଚେଷ୍ଟରଠାରେ ବିରାଟ କାର୍ପାସ କାରଖାନା ଗଢ଼ି ଉଠିଲା । ତୁଳା, ନୀଳ, ଝୋଟ, ଲୁହା, କୋଇଲା ଆଦି ବିବିଧ କଞ୍ଚାମାଲ କଳ୍ପନାତୀତ ପରିମାଣରେ ବିଦେଶକୁ ଚାଲି ଚାଲିଲା ଏବଂ ନିଷ୍ପେଷିତ ଭାରତ ହେଲା ଇଂରାଜ ଶିଳ୍ପପତିମାନଙ୍କ ପ୍ରଶସ୍ତ ବଜାର । କିନ୍ତୁ କ୍ରମେ ଇଂରାଜଙ୍କର ଶୋଷଣର ଅନ୍ତରାଳରେ ଭାରତର ବଣିକ ଗୋଷ୍ଠୀ ଜାଗି ଉଠିଲେ ଏବଂ ଭାରତ ମହାସାଗରରେ ବାଣିଜ୍ୟ ପ୍ରଭାବ ବିସ୍ତାର କରିବାକୁ ସାହସୀ ହେଲେ । ହଂକଂ, ମାଲୟ, ଫିଲିପାଇନ୍ ଓ ଫିଜି ଦ୍ୱୀପପୁଞ୍ଜରେ ବହୁ ସଂଖ୍ୟାରେ ଭାରତୀୟ ଉପନିବେଶ ଗଢ଼ା ହେଲା ଏବଂ ପ୍ରଶାନ୍ତ ମହାସାଗରର ବାଣିଜ୍ୟରେ ଭାରତୀୟଙ୍କ ହାତ ଦୃଢ଼ ହେଲା । ଏ ଆଡ଼େ ପୁଣି ଦକ୍ଷିଣ ପୂର୍ବ ଆଫ୍ରିକା ଏବଂ ଏପରିକି ବ୍ରିଟିଶ ଗାଏନା, ତ୍ରିନିଦାଦ୍, ଓ ଜାମେକା ଯାଏ ଭାରତୀୟଙ୍କ ବାଣିଜ୍ୟ ପ୍ରଭାବ ବିସ୍ତୃତ ହେଲା ଓ ସେ ସବୁ ଅଞ୍ଚଳରେ ଭାରତୀୟ ବଣିକଙ୍କର ଉପନିବେଶମାନ ଗଢ଼ା ହେଲା । ସୁତରାଂ ପାଶ୍ଚାତ୍ୟ ଶକ୍ତି ଦ୍ୱାରା ପରାଜିତ ହେଲେ ମଧ୍ୟ ଏସିଆର ବିଭିନ୍ନ ଜାତି ମଧ୍ୟରେ ଭାରତୀୟମାନେ ନୌ ବାଣିଜ୍ୟ କ୍ଷେତ୍ରରେ ଅଗ୍ରଗାମୀ ହୋଇ ପାରିଥିଲେ ଏବଂ ଅତୀତର ଗୌରବ ଓ ପରଂପରା ସେମାନଙ୍କଠାରେ ଅତୁଟ ହୋଇ ରହି ପାରିଥିଲା ।

## ସ୍ୱାଧୀନ ଭାରତର ନୌ ଶକ୍ତି :—

୧୪୯୮ ଖ୍ରୀଷ୍ଟାବ୍ଦରେ ଭାସ୍କୋଡ଼ାଗାମା ଭାରତର କାଲିକଟ୍ ବନ୍ଦରରେ ପାଦ ଦେଲା ଦିନଠାରୁ ଏସିଆର ନୌ ବାଣିଜ୍ୟ ଓ

ରାଜନୀତି କ୍ଷେତ୍ରରେ ଯେଉଁ ନୂଆ ଯୁଗ ଫିଟିଲା ତାହାର ସମାପ୍ତି ହେଲା । ୧୯୪୯ ଖ୍ରୀ ରେ ଯେବେ ଇଉରୋପୀୟଙ୍କ ନୌ ବେଳା କମ୍ୟୁନିଷ୍ଟ ଚୀନର ଉପକୂଳରୁ ବିଦାୟ ନେଲା । ଏହାର ଦୁଇବର୍ଷ ଆଗରୁ ଅର୍ଥାତ୍ ୧୯୪୭ ଖ୍ରୀ: ରେ ଭାରତ ବ୍ରିଟିଶ୍ ସାମ୍ରାଜ୍ୟବାଦର କବଳରୁ ମୁକ୍ତ ହେଲା ଓ ଇଂରାଜ ନୌଶକ୍ତି ଭାରତ ମହାସାଗରରୁ ହଟିଗଲା । କିନ୍ତୁ ସ୍ୱାଧୀନତା ପରେ ଭାରତର ନୌ ଜୀବନ ଆରମ୍ଭ ହେଲା ଅତି ଅସହାୟ ଓ ନିଃସମ୍ବଳ ଅବସ୍ଥାରୁ ଏବଂ ଏହା ଶକ୍ତିଶାଳୀ କରି ଗଢ଼ିବା ଦାୟିତ୍ୱ ରହିଲା ଭାରତୀୟ ଜନସାଧାରଣ ଓ ସରକାରଙ୍କ ଉପରେ । ଭାରତର ସାଢ଼େ ତିନି ହଜାର ମାଇଲ ଉପକୂଳ ରକ୍ଷାକରିବା ପାଇଁ ଯେ ଏକ ଟାଣୁଆ ନୌବାହିନୀ ଗଢ଼ିବାକୁ ହେବ ଏଥିରେ ମତ ଦ୍ୱୈଧ ରହି ନ ପାରେ । ପୁଣି ନୌବାହିନୀ ସଙ୍ଗେ ଆନ୍ତର୍ଜାତିକ ବାଣିଜ୍ୟର ବିକାଶ ପାଇଁ ପଣ୍ୟ-ଜାହାଜ, ସୁଦକ୍ଷ ନାବିକ ଓ ନୌ କାରିଗର ବହୁ ସଂଖ୍ୟାରେ ଆବଶ୍ୟକ । ଜାହାଜ ନିର୍ମାଣ ପାଇଁ ସିନ୍ଧିଆ ନାଭିଗେସନ୍ କୋଂପାନୀ ବିଶାଖାପାଟଣାଠାରେ ଯେଉଁ ବିରାଟ କାରଖାନା ଗଢ଼ିଥିଲେ ତାହା ସରକାରଙ୍କ ସହାନୁଭୂତି ଲାଭକରି ଶୀଘ୍ର ଉନ୍ନତି କଲା । ଏହି ଅନୁଷ୍ଠାନକୁ ଅଧିକ ସୁଦୃଢ଼ ରୂପେ ପରିଚାଳନା କରିବା ନିମନ୍ତେ ସରକାର ସିନ୍ଧିଆଙ୍କ ସହିତ ସହଯୋଗ ସ୍ଥାପନ କଲେ ଏବଂ ଏହାର ମୂଳଧନର ଅଧିକାଂଶ ଭାଗ ପ୍ରଦାନ କଲେ । ୧୯୫୨ ସାଲ ମାର୍ଚ୍ଚ ମାସଠୁ ଏହା ଏକ ଯୌଥ କୋଂପାନୀ ରୂପେ "ହିନ୍ଦୁସ୍ଥାନ ସିପ୍‌ୟାର୍ଡ" ନାମରେ ପରିଚିତ ହୋଇଛି ଏବଂ ଫରାସୀ କାରିଗରମାନଙ୍କ ସାହାଯ୍ୟରେ ବିଶେଷ ଅଗ୍ରଗତି କରି ପାରିଛି । ନୌକାରିଗରୀ ଶିକ୍ଷା କରିବା ପାଇଁ, ସୁଦକ୍ଷ ନାବିକ ଓ କର୍ମଗୃହୀ ଗଢ଼ିବା ପାଇଁ ଏବେ କଲିକତାର ବେହାଲଠାରେ ଏକ ମେରାଇନ୍ ଇଂଜିନିୟରିଂ କଲେଜ୍

ସ୍ଥାପନ କରାଯାଇଛି । ଏହା ଭିନ୍ନ ଉଦ୍‌ଗ୍ରନ୍‌, ମେଖଲା ଓ ଭଦ୍ରା ଆଦି ଜାହାଜରେ ମଧ୍ୟ ବିବିଧ ନୌଶିକ୍ଷାର ବ୍ୟବସ୍ଥା ରଖାଯାଇଛି ।

ସରକାରଙ୍କ ଅଦମ୍ୟ ଚେଷ୍ଟାରେ ଭାରତୀୟ ନୌବାହିନୀକୁ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରି ନୂତନ ପ୍ରଣାଳୀରେ ଗଢ଼ାଯାଉଛି । ଇଂରାଜଙ୍କଠୁ ହସ୍ତଗତ କରାଯାଇଥିବା ପ୍ରସିଦ୍ଧ "ଦିଲ୍ଲୀ" ଜାହାଜ ବର୍ତ୍ତମାନ୍ ସ୍ୱାଧୀନ ଭାରତର ପତାକାବାହୀ ରଣତରୀ । ଏହାଛଡ଼ା ରାଜପୁତ୍, ରଣଜିତ୍ ଓ ରାଣା ନାମରେ ତିନୋଟି ଡେଷ୍ଟ୍ରୟର; ଯମୁନା ସତ୍‌ଲେଜ୍, କାବେରୀ ଓ କୃଷ୍ଣା ଆଦି ଫ୍ରିଗେଟ୍; ଏବଂ ବହୁ ସଂଖ୍ୟକ ମାଇନ୍ ସୁଇପର୍, ଲେଣ୍ଡିଂକ୍ରାଫ୍ଟ ଓ ମୋଟର ଲଞ୍ଚ ନେଇ ଭାରତର ନୌବାହିନୀର ମୂଳଦୁଆ ଗଠନ କରାଯାଇଛି । ଭାରତର ଯୁବକମାନଙ୍କୁ ନୌବାହିନୀର ସୈନିକ ଓ ଅଫିସର ରୂପେ ତାଲିମ୍ କରିବାପାଇଁ ଅନେକ ନୌତାଲିମ୍ କେନ୍ଦ୍ର ମଧ୍ୟ ସ୍ଥାପନ କରାଯାଇଛି । ସେଥି ମଧ୍ୟରେ କୋଚିନ୍ ବନ୍ଦରରେ ଥିବା ବେନ୍ଦର୍ଥୀ ଭାଇଭାଟ୍‌ର ସରକାର୍, ଲୋନାଭ୍ଲାର ଶିବଜୀ ଏବଂ ଜାମ୍ ନଗରର ବଲ୍‌ସୁର ବିଶେଷ ରୂପେ ପ୍ରସିଦ୍ଧ । ଭାରତୀୟ ନୌବାହିନୀ ବର୍ତ୍ତମାନ୍ ଶିଶୁ ଅବସ୍ଥାରେ ଥାଇ ମଧ୍ୟ ଏସିଆ ମଧ୍ୟରେ ଏକ ସଂଯତ ଓ ଉନ୍ନତ ଅନୁଷ୍ଠାନରୂପେ ନାମ କରି ପାରିଛି । ଯୁଦ୍ଧ ଓ ହିଂସାର ମାରାତ୍ମକ ନୀତିରେ ପଥହରା ନହୋଇ ଏହା ଶାନ୍ତି ଓ ମୈତ୍ରୀର ମହାନ୍ ଆଦର୍ଶ ଗ୍ରହଣ କରି ନେଇଛି । ଆନ୍ତର୍ଜାତିକ କ୍ଷେତ୍ରରେ ଶାନ୍ତି ଓ ସଦ୍‌ଭାବ ବଢ଼ାଇବାପାଇଁ ଭାରତୀୟ ନୌ ସେନା ଇରାକ୍, ଇରାନ୍, ଆରବ, ମାଲୟ, ଇଣ୍ଡୋନେସିଆ, ଅଷ୍ଟ୍ରେଲିଆ, ନିଉଜିଲେଣ୍ଡ, ପୂର୍ବ ଅଫ୍ରିକା ଆଦି ପଡ଼ୋଶୀ ରାଜ୍ୟମାନଙ୍କୁ ଯାଇ ସମସ୍ତଙ୍କୁ ଶୁଭେଚ୍ଛା ଜଣାଇ ଅଛନ୍ତି ଏବଂ ସବୁଠାରେ ଅଭିନନ୍ଦନ ଓ ସମ୍ମାନ ପାଉଛନ୍ତି । ରାଣୀ

ଏଲିଜାବେଥ୍‌ଙ୍କ ଅଭିଷେକ ବେଳେ ଭାରତର ନୌ ବାହିନୀ କମନ୍‌ୱେଲଥ୍ ନୌଶକ୍ତି ସହିତ ସହଯୋଗ କରି ବିଶ୍ୱମୈତ୍ରୀ ଓ ଅନୁରାଗର ଆଦର୍ଶ ଦେଖାଇ ପାରିଛନ୍ତି । ଭାରତ ପରାଧୀନତାର ଗ୍ଳାନି ଦୂରକରି ଆତ୍ମ ବିଶ୍ୱାସ ଲାଭକରିଛି ଏବଂ ପୃଥିବୀରେ ତାହାର ଅନାବିଲ ଭାବଧାରା ପ୍ରଚାର କରୁଛି । ପ୍ରିୟଦର୍ଶୀ ଅଶୋକଙ୍କ ଧର୍ମଘୋଷ ଆଜି ଏତେ କାଳ ପରେ ଯୁଦ୍ଧଖୋର ଜାତିଙ୍କ ପ୍ରାଣରେ ଯାଦୁକାରୀ ସ୍ପର୍ଶ ଦେଇଯାଉଛି ଏବଂ ଦେଶ ଦେଶରେ ଧର୍ମଚକ୍ର ଶୋଭିତ ପତାକା ଉଡ଼ି ନୂତନ ଆଶା ଓ ଆଲୋକ ପ୍ରଦାନ କରୁଛି । ଏସିଆର ଦେଶମାନେ ମଧ୍ୟ କ୍ଳାନ୍ତି ଦୂରକରି ଭାରତର ମହାନ୍ ଆଦର୍ଶରେ ଜାଗି ଉଠିଛନ୍ତି । ଭାରତର ନୌବାହିନୀ ଏ ଆଦର୍ଶର ବାହକ ଓ ଅଗ୍ରଦୂତ ରୂପେ ପୃଥିବୀରେ ଶାନ୍ତି ଓ କଲ୍ୟାଣ ସ୍ଥାପନ କରିବାରେ ସମର୍ଥ ହେବେ ବୋଲି ଆଶା ।

